ଖାଉଟି ସୁରକ୍ଷା ନାଟକ

ପ୍ରଥମ ପ୍ରକାଶ - ୧୯୯୯

ନାଟ୍ୟକାର : ଆନଂଦ ଚଂଦ୍ର ପହି

ପ୍ରକାଶକ : ପି.ଡି.ସି. ନେଟୱାର୍କ
୧୦୭, ନିହାରିକା ଆପାର୍ଟମେଣ୍ଟ, ଭୁବନେଶ୍ୱର - ୭୫୧୦୦୬
ଫୋନ୍ : (୦୬୭୪) ୪୭୫୩୨୯

ମୁଦ୍ରଣ :
ଓଁକାର, ଆଚାର୍ଯ୍ୟବିହାର, ଭୁବନେଶ୍ୱର

ମୂଲ୍ୟ : ୧୫ ଟଙ୍କା

KHAUTI SURAKHYA NATAK

First Edition : 1999

Playright **Ananda Chandra Pahi**

Publisher PDC Network
107, Niharika Apartment
Bhubaneswar - 751006
Phone : (0674) 475329

Printed By **OMKAR**, Acharya Vihar,
Bhubaneswar

Price Rs 15 - 00

# ଚରିତ୍ରସୂଚୀ

- ଫଗୁଆ - ଗାଆଁ ଲୋକ । ବୟସ ୪୦ ବର୍ଷ ।
- ମରୁଆ - ଫଗୁଆର ସ୍ତ୍ରୀ । ବୟସ ୩୫ ବର୍ଷ ।
- ଆଲୋକ - କୁବପିଲା । ଶିକ୍ଷିତ ଯୁବକ ।
- ଅପର୍ତ୍ତି - ଗାଆଁଲୋକ । ବୟସ ୪୦ ବର୍ଷ ।
- ଗଗନ - ଟିଭି ଦୋକାନୀ ।
- ନଟିଆ - ଗାଆଁ ଲୋକ । ୪୫ ବର୍ଷ । କଣ୍ଟ୍ରୋଲ ଦୋକାନୀ ।
- ଢଗୁଆ - ଗାଆଁ ଲୋକ । ୩୫ ବର୍ଷ ।
- ଶରତ - କ୍ଲବପିଲା । ଶିକ୍ଷିତ ଯୁବକ ।
- ଅନାଦି - ଗାଆଁ ଲୋକ । ୪୫ ବର୍ଷ ।
- ମିଟର ରିଡର - ଯୁବକ । ବୟସ ୩୫ ବର୍ଷ ।
- ବିଚାରପତି - ବୟସ୍କ ଲୋକ ।
- ପେସ୍କାର - ୪୦ ବର୍ଷ ।
- ଛଗନ - ଲୁଗା ଦୋକାନୀ ।
- ମ୍ୟାନେଜର - ଗ୍ରିଡକୋର ଅଫିସର ।
- ସନିଆ - ଗାଆଁଲୋକ । ମଧ୍ୟ ବୟସ୍କ ।
- ଫକୀର - ଗାଆଁ ଦୋକାନୀ ।

**ଖାଉଟି ସୁରକ୍ଷା ନାଟକର ବିଭିନ୍ନ ଚରିତ୍ରରେ ଅଭିନୟ କରିଛନ୍ତି :**

- ରାଧାମୋହନ ଜେନା
- ଦୀନେଶ କୁମାର ସାହୁ
- ଶ୍ରୀଧର ଦାସ
- ପ୍ରଦୀପ କୁମାର କୁଅଁର
- ରଘୁନାଥ ବେହେରା
- ସାଧୁଚରଣ ଦାସ
- ରବୀନ୍ଦ୍ର କୁମାର ମିଶ୍ର
- ହରିହର
- ବୈକୁଣ୍ଠ
- ମାମି
- ଓ ଅନ୍ୟମାନେ

---

ନିର୍ଦ୍ଦେଶନା- କିଶୋର ଖଣ୍ଡୁଆଳା

# ପ୍ରଥମ ଦୃଶ୍ୟ

(ଫଗୁଆର ଚାଳ ଘର । ଫଗୁଆର ସ୍ତ୍ରୀ ମରୁଆ ଦାଣ ପିଣ୍ଡାରେ ବସି କୁଲାରେ ଚାଉଳ ପାଛୁଡୁଛି । କଟକରୁ ଖୁବ୍ କ୍ଲାନ୍ତ ହୋଇ ଫଗୁଆ ଫେରିଲା । ସମୟ ଅପରାହ୍ନ ଦୁଇଟା)

ମରୁଆ : ଗଲା, ଗଲା । ଧୋବ ଫର୍‌ଫର୍ ନୁଗାଟା ଅସନା, କୋତରା ହେଇ ଗଲା । ତମର କି ବୁଦ୍ଧି ଥକଲ କେଇଛାଣି ? ତମେ ସେ ଅସନା ଭୂଇଁଟାରେ ବସୁଥିଲ କାଇଁକି ?

(ଫଗୁଆ ଉଠିପଡି ଲୁଗାଟାରୁ ଧୂଳି ଝାଡି ହେଲା)

ମରୁଆ : ନିଅ, ଏଇ ପିଢ଼ାରେ ବସ ।

ଫଗୁଆ : (ମରୁଆଠାରୁ ପିଢ଼ାଟା ନେଇ ବସିଲା ଓ କିଛି ନ କହି ମରୁଆର ମୁହଁକୁ ଚାହିଁଲା ।)

ମରୁଆ : ମ ...... କ'ଣ ହେଲା ? ଏମିତି ହାଁଟା କରି ଅନେଇଚ କ'ଣ ?

ଫଗୁଆ : (କ୍ଲାନ୍ତ ଭାବରେ) ଶୋଷରେ ମୋ ହଁସା ଉଡିଗଲାଣି ।

ମରୁଆ : ତମକୁ କିଏ କହୁଥିଲା ଏ ନିରାସିଆ ଖରାଟାରେ କଟକରୁ ଆସିବାକୁ ? ଅଣିଆ ଟେସନରେ ଦଣ୍ଡେ ବସି ଗଲ ନେଇଁ, ଖରାଟା ନଇଟି ପଡିଥିଲେ ଆଇଥାନ୍ତ ।

ଫଗୁଆ : ଦେ ଝଅଟି ପାଣି ଗିଲାସେ ଦେ । ଶୋଷରେ ମୋ ତଣ୍ଟି ଅଠା ଅଠା ହେଇଗଲାଣି ।

ମରୁଆ : ଦଉଚି, ଏମିତି ଉଛନ୍ନ କାଇଁକି ହଉଚ ? ଖରାଟାରେ ଆଇଚ, ଦିହରୁ ଝାଳ ବୋହୁଚି । ଏ ଝାଳ ଦିହରେ ପାଣି ପିଇଲେ ଦିହ ଖରାପ ହବ ନେଇଁ ?

(ମରୁଆ ମାଠିଆ ଗଡ଼େଇ ପାଣି ଗ୍ଲାସ୍‌ଟେ ଫଗୁଆକୁ ଦେଲା)

ମରୁଆ : ନିଅ ।

ଫଗୁଆ : ( ଢକ୍ ଢକ୍ କରି ପାଣି ଗ୍ଲାସଟା ପିଇ ଦେଇ ଆଶ୍ୱସ୍ତର ନିଃଶ୍ୱାସ

ମାରିଲା) ଓହୋ ପ୍ରାଣ ବଞ୍ଚି ଗଲା ।

ମରୁଆ : (ଫଗୁଆକୁ ବିଞ୍ଚଣୀରେ ବିଞ୍ଚିଲା)
କଟକ ଦୋକାନୀ ଲୁଗାଟା ଫେରେଇ ନେଲାଟି ?

ଫଗୁଆ : ତୁ କଇଚୁ, ଫେରେଇ ନବ ନେଇଁ ?

ମରୁଆ : ଏମିତି କ'ଣ କହୁଚ ମ ? କାଇଁ କୋଉଠି ରଖିଚ ଦେଖି ଥା ? ରଙ୍ଗଛଡା ଶାଢ଼ିଟା ଫେରେଇ ନେଇକି ଭଲ ଶାଢ଼ିଟାଏ ଦେଇଚି ତ ?

ଫଗୁଆ : (ବ୍ୟାଗ୍‌ଟାକୁ ମରୁଆ ଉପରକୁ ଫିଙ୍ଗି ଦେଇଛି) ନେ, ଦେଖ୍ ।

ମରୁଆ : (ବ୍ୟାଗ୍‌ଟି ଆଗ୍ରହରେ ଖୋଲିଲା) ଏଥିରେ କାଇଁ କ'ଣ ? ସେଇ ରଙ୍ଗ ଛଡା ଶାଢ଼ିଟା ତ ଫେରେଇ ଆଣିଚ । ଦୋକାନୀ କ'ଣ ଫେରେଇ ନେଲା ନେଇଁ ?

ଫଗୁଆ : କଥାରେ କଇଚି - ମାଇପି ବୁଦ୍ଧି ପ୍ରଳୟଙ୍କରୀ । ତୋ କଥାରେ ଏତେ ଟଙ୍କା ଖରଚ କରି କଟକ ଯାଇ ଖାଲି ବେଳିତ ଆଉ ଅପମାନ ପାଇକି ଆଇଲି ।

ମରୁଆ : ସେ ଅଲପେଇଶାର ଏତେ ବଡ଼ପ ? ଚୋରୀ ତା' ଉପରେ ସିନାଜୋରି । ତମ ପାଟିରେ କ'ଣ ମଣ୍ଡା ପଇଥିଲା ? ତମେ ତାକୁ କହିଲ ନେଇଁ - ହକ ନଗଦ ଦେଢ଼ଶ ଟଙ୍କା ତମକୁ ଦେଇ ଶାଢ଼ି ନେଇଥିଲି, ଗୋଟେ ଧୁଆରେ ରଙ୍ଗ ଛାଡି ଛୁଞ୍ଚୁକନା ହେଇଗଲା । ଆମ ଟଙ୍କା କ'ଣ ମୋଫତ ପଡିଚି ?

ଫଗୁଆ : ସେ କଥା କ'ଣ ମୁଁ ନ କହି ଛାଡିଚି ? ସିଏ ମତେ ଆଗେ ଫାଙ୍କିଲା - ନା ଏଇଟା ମୋ ଦୋକାନ ଲୁଗା ନୁହଁ । ସେଇଠୁ ମୁଁ ତାକୁ ତା ଦୋକାନ ରସିଦ ଦେଖେଇଲି । ତା'ପରେ ସିଏ କ'ଣ କହିଲା ଜାଣିଚୁ ?

ମରୁଆ : କ'ଣ ?

ଫଗୁଆ : କଇଲା - ମୁଁ ଏ ଲୁଗା ତମକୁ ବିକିଚି ସତ, ହେଲେ ଏ ଲୁଗା ମୁଁ କ'ଣ ମୋ ଦୋକାନରେ ତିଆରି କରିଚି ? ଆମେ ବ୍ୟବସାୟୀ ଲୋକ । କିଣିକି ବିକିବା କଥା । ତମେ କିଣିଲା ବେଳେ ଦେଖିକି ନେଲ ନେଇଁ ?

ମରୁଆ : ଭାରି କଇଲାବାଲା ହେଇଚି ସିଏ । କିହୋ ଦେଖିକି କ'ଣ ନବୁ ?

ଆଖିରେ ଦେଖିଲେ କ'ଣ ଜାଣିହବ କେଉଟାର ରଙ୍ଗ ରହିବ ଆଉ କେଉଟାର ରଙ୍ଗ ଛାଡ଼ିବ ? ଧୋଇଲେ ସିନା ଜାଣିବୁ ? ହଁ ତମେ ସେଠୁ ତାକୁ କ'ଣ କହିଲ ?

ଫଗୁଆ : କ'ଣ ଆଉ କହିବି ?

ମରୁଆ : କିଛି କହିଲ ନେଇଁଟି ? ମୁଁ ତମ ଢଙ୍ଗ ଜାଣେ ପରା । ଘରେ ଖାଲି ମାଇପ ଉପରେ ପାଇକ ପଣ । ସେଠି କ'ଣ ପାଞ୍ଚଲୋକ ନ ଥିଲେ ? ତାଙ୍କ ଆଗରେ କଥାଟା ପକେଇ ଦେଇ ନେଇଁ ?

ଫଗୁଆ : ସେଟା କ'ଣ ଆମ ଏଇ ଗାଆଁ ହେଇଚି ? ସେଟା କଟକ ସହର, ଯେଝା କାମରେ ଯେଝା ଦଉଡ଼ିଚନ୍ତି । କାହା କଥା ଶୁଣିବାକୁ କାହାର ବେଳ ଅଛି ?

ମରୁଆ : ଲୁହା କଅଁଳ ପାଇଲେ ବିଲେଇ କାମୁଡ଼ିବ । ତମକୁ ନରମା ଦେଖି ସେ ଦୋକାନୀ ଠିକ୍ ପାଣି ଦେଇଚି । ଦେଢ଼ଶ ଟଙ୍କା କ'ଣ କମ୍ ହେଇଚି ? ସିଏ ନାହିଁ କଲା ଆଉ ତମେ ସେଇ ରଙ୍ଗଛଡ଼ା ନୁଗାଟାକୁ ଧରିକି ଟଙ୍ଗ ଟଙ୍ଗ ହେଇ ଘରକୁ ପଳେଇ ଆଇଲ । ଧନ୍ୟ ତମକୁ କହିବ ।

ଫଗୁଆ : ମୁଁ ଯେତେ ପ୍ରକାରେ କହିଲି, ସିଏ ନାହିଁ ନିଷ୍ଠି କଲା । ତା'ର ଏକାଜିଦ୍ ଜିନିଷ ଥରେ ବିକିରି ହେଲେ ଆଉ ଫେରନ୍ତ ନବ ନେଇଁ । ମୁଁ ଆଉ କ'ଣ କରି ଥାଆନ୍ତି ?

ମରୁଆ : କ'ଣ କରିଥାନ୍ତି, କ'ଣ କରିଥାନ୍ତି କ'ଣ ହଉଚମ ? ତମେ ଗୋଟେ ମଣିଷ ହେଇଚ, ତମର ଟିକେ ହେଲେ ଅକଲ ନାହିଁ ।

ଫଗୁଆ : ତୁ ତ ଏତେ ଅକଲବାଲା ମାଇପିଟା କଇଲୁ ଦେଖିଆ ମୁଁ କ'ଣ ଆଉ କରିଥାନ୍ତି ?

ମରୁଆ : ମୁଁ ହେଇ ଥିଲେ ନୁଗାଟାକୁ ସେ ଅଲପେଇସା ଦୋକାନୀ ମୁହଁକୁ ଫୋପାଡି ଦେଇ ଚାଲି ଆଇଥାନ୍ତି । ଏଟା ନୁଗା ନୁହଁ ତ, ଛୁଞ୍ଚୁକନା । ଏଟା ଆମର ଆଉ କ'ଣ ହବ ?

ଫଗୁଆ : ତୋର ସେ ମାଇପି ବୁଦ୍ଧି ରଖି ଦେଇଥା । ମୁଁ ତା ଉପରୁକୁ ନୁଗାଟା ପକେଇ ଦେଇଥିଲେ ନା ସିଏ ଲୋକ ନଗେଇ ବହେ ଛେଚି ଥାଆନ୍ତା । ଆଉ ଶେଷରେ କାଇଜି କରି ଛାଡି ଥାଆନ୍ତା । ମୁଁ ତା ଗୋଡ ହାତ ଧରି, ଭୁଲ ମାଗି ଘରକୁ ଆଇଥାନ୍ତି ।

ଆଲୋକ : (ପ୍ରବେଶି) କଥା କ'ଣ କି ଫଗୁଆଇ ! କାହା ଗୋଡ ହାତ ଧରି ଭୁଲ ମାଗିଥାଉ ?

ଫଗୁଆ : କହନାରେ ଆଲୋକ ! ଏ ଯୁଗ ଯାହା ହେଲାଣି, ତମେ ଯେତେ ହୁସିଆର ହେଲେ ବି ତମକୁ ଲୋକେ ଚିତାକାଟି ଦେବେ ।

ଆଲୋକ : କ'ଣ ହେଲା କି ?

ଫଗୁଆ : କଥା କିଛି ନାହିଁ ମ, ଏଇ ......

ମରୁଆ : ବାଆଁରଉଚ କାଇଁକି, କ'ଣ ନାକ ମାଡୁଚି କି ? କଥାଟା ସଫାସଫା କହୁନ ? ଆଲୋକ କ'ଣ ପରଲୋକ ହେଇଚନ୍ତି କି ?

ଫଗୁଆ : ବାଆଁରେଇବି କାହିଁକି ? କିଏ କ'ଣ ମତେ ଫାଶି ଦେଇ ଦବ ନା ଶୂଳିରେ ଚଢ଼େଇ ଦବ ?

ଆଲୋକ : କଥା କ'ଣ ଫଗୁଆଇ ! ତମେ ଏମିତି ରାଗୁଚ କାଇଁକି ?

ମରୁଆ : ସିଏ କଇବେ ନେଇଁ, ମୁଁ କହୁଚି ଶୁଣ । ଇଏ ଆମର କାଲି କଟକ ଯାଇଥିଲେ । ମୋର ପେଡ଼ିଶାଢ଼ି ନ ଥିଲା । ଆଗିଲା ମାସରେ ମୋ ସାନ ଭାଇ ରଥିଆର ବାହାଘର । ମୁଁ ୟାକୁ କହିଲି ମୋ ପେଇଁ ଗୋଟେ ଭଲ ଶାଢ଼ି ଆଣିବ । ଦେଢ଼ଶ ଟଙ୍କା ଦେଇ ଗୋଟେ ଶାଢ଼ି ଆଣିଲେ । ମଣ୍ଡଦିଆ ନୂଆ ଶାଢ଼ି ମତେ ପିନ୍ଧିବାକୁ ମୋଟେ ଭଲ ନାଗେ ନେଇଁ । ମୁଁ ତାକୁ ଧୋଇବାକୁ ବତୁରେଇ ଦେଲି । ବୁଝିଲ ଆଲୋକ । ତମକୁ ମିଛ ମତେ ସତ, ଖାଲି ମାଟି ଗୋବର ପାଣିମିନ୍ତି ରଙ୍ଗ ବୋହି ଛୁଞ୍ଚୁକନାଠୁ ହୀନ ହେଇଗଲା ।

ଫଗୁଆ : ତୁ ତ ସବୁ ଶୁଣିଲୁ, ତୁ ତ ପାଠ ସାଠ ପଢ଼ା ପିଲା । ତୁ କହ ଆଲୋକ ! ଏଥକୁ ମୁଁ କ'ଣ କରିବି ? ଭଲ ଶାଢ଼ି ବୋଲି ଦେଢ଼ଶ ଟଙ୍କା ଦେଇକି ଆଣିଲି; ମୁଁ କ'ଣ ନୁଗା ଭିତରେ ପଇଚି ? ମୁଁ କେମିତି ଜାଣିବି ଯେ ସେ ନୁଗାରୁ ରଙ୍ଗ ଛାଡିବ ?

ଆଲୋକ : ତମେ ସେ ଲୁଗାଟାକୁ ନେଇ ଫେରାଇ ଦେଇ ଆଉ ଗୋଟେ ଭଲ ଲୁଗା ଆଣ !

ମରୁଆ : ମୁଁ କହିଲି, ମୋ କଥା ତମକୁ ଗନ୍ଧେଇଲା, ଆଲୋକ କ'ଣ କହିଲେ ଶୁଣିଲଟି ? ବୁଝିଲ ଆଲୋକ ଆଜି ଇଏ, ଘର କାମ ମାରା କରି କଟକ ଯାଇଥିଲେ ।

ଆଲୋକ : କଟକ ଯାଇଥିଲେ ?

ଆନଂଦ ଚଂଦ୍ର ପହି

ମରୁଆ : ହଁ । ଦୋକାନୀ ଲୁଗା ବଦଳେଇ ନବ ନେଇ ବୋଲି ନାହିଁ କଲା ଆଉ ଇଏ ଆମର ସୁନା ପିଲାଟିଏ ପରି ସେଇ ରଙ୍ଗ ଛଡା ଲୁଗାଟାକୁ କାଖରେ ଯାକି ପକେଇ ଆଇଲେ ।

ଫଗୁଆ : ଘରେ ବସି ବଡ ବଡ କଥା କହିବା ସହଜ । ତୁ ତ ଲୁଗାଟାକୁ ଧୋଇଦେଲୁ ସିଏ ଫେରେଇ ନେବ କେମିତି ?

ମରୁଆ : ଯାଙ୍କ ବୁଦ୍ଧିକି ଦେଖ । ଲୁଗାଟା ନହକାଳିଲେ ରଙ୍ଗ ଧୋଇଯିବ ବୋଲି, କେମିତି କିଏ ଜାଣିବ ?

ଆଲୋକ : ଜାଣିଲି ନୂଆ ବୋଉ ! ତମ କଥା ଠିକ୍, ଫଗୁଆ ଭାଇ କଥା ଠିକ୍ ଆଉ ସେ ଲୁଗା ଦୋକାନୀ କଥା ବି ଠିକ୍ ।

ମରୁଆ : ଇଏ କେମିତିଆ କଥା ? ସମସ୍ତଙ୍କ କଥା କେମିତି ଠିକ୍ ହବ ?

ଆଲୋକ : ମୁଁ ବୁଝେଇ ଦଉଚି ଶୁଣ । ତମେ ଟଙ୍କା ଦେଇଚ ଯେତେବେଳେ ଭଲ ଶାଢ଼ିଟେ ପାଇବା କଥା । ହକ ପଇସା ଦେଇ ଏମିତି ରଙ୍ଗ ଛଡା ଶାଢ଼ି ରଖିବ କାଇଁକି ? ଏଣୁ ତମ କଥା ଠିକ୍ । ତମର ଆଉ ଗୋଟେ ଭଲ ଶାଢ଼ି ଦରକାର ନ ହେଲେ ଟଙ୍କା ଫେରସ୍ତ ପାଇବା ଦରକାର ।

ମରୁଆ : ଇଏତ ଗଲା ମୋ କଥା । ଆଉ ତମ ଭାଇ ଯାହା କଟକ ଯାଇଥିଲେ, ସେ ଦୋକାନୀ ତାଙ୍କୁ ଭୁରୁଡଟେ. ପକେଇଲା ସିଏ ଲାଞ୍ଜଯାକି ପଳେଇ ଆଇଲେ, ସିଏ କେମିତି ଠିକ୍ ?

ଆଲୋକ : ସିଏ କଟକ ସହର । ସେ ଲୁଗା ଦୋକାନୀ ପଇସାବାଲା ପୁଣି ତା ଦୋକାନରେ ତାର ଚାକର ବାକର ଥଛନ୍ତି । ଫଗୁଆଇ ତା ସାଙ୍ଗରେ ଝଗଡାଝାଣ୍ଟି କରିଥିଲେ ଫଳ କିଛି ଭଲ ହେଇ ନଥାନ୍ତା ।

ଫଗୁଆ : ଏ ହୁଣ୍ଡିକି ଟିକେ ସେଇ କଥାଟା ଭଲ କି ବୁଝା । ଶାଢ଼ିଟା ବଡ ନା ଆମ ମାନ ସନମାନ ବଡ ? ମୁଁ ବେଶି ଉଚ୍ଚବାଚ ହେଇଥିଲେ ସିଏ କି ତା' ଲୋକ ଯଦି ମୋ ଉପରକୁ ହାତ ଉଠେଇ ଥାଆନ୍ତେ ?

ଆଲୋକ : ତମେ ଯାହା କରିଚ ଠିକ୍ କରିଚ ।

ମରୁଆ : ହଉ ହେଲା । ଆଉ ସେ ଦୋକାନୀ କଥା ଠିକ୍ କେମିତି ?

ଆଲୋକ : କଥା କ'ଣ କି ନୂଆ ବୋଉ ! ସିଏତ ବେପାରୀ ଲୋକ, ସିଏ କ'ଣ ଶାଢ଼ି ତିଆରି କରୁଚି ? ଶାଢ଼ିଟା ଧୋଇ ଦେବା ପରେ ସିଏ ଶାଢ଼ିଟାକୁ ନେଇ କ'ଣ କରିବ ?

ମରୁଆ : ସେଥି ପେଇଁ କ'ଣ ଆମେ ଦାୟୀ ? ସିଏ ସେ ଶାଢ଼ି ଯୋଉ

କମ୍ପାନୀରୁ ଆଣିଥିଲା ତାକୁ ଫେରେଇ ଦେବ ?

ଆଲୋକ : ସେ କଥା ଠିକ । କିନ୍ତୁ ଦୋକାନୀ କଥା ସେ କମ୍ପାନୀ ଶୁଣିବ ନେଇଁ । ସେଥିପାଇଁ ଅଲଗାବାଟ ଅଛି ।

ମରୁଆ : ଅଲଗା ବାଟ ?

ଫଗୁଆ : ଆଉ କି ବାଟ ଅଛି ?

ଆଲୋକ : ଆଇନ ବାଟ ।

ମରୁଆ : ସେଇଟା ପୁଣି କି ବାଟ ?

ଫଗୁଆ : କ'ଣ କୋଟ, କଚେରୀ ଯିବାକୁ ପଡ଼ିବ ?

ଆଲୋକ : ନା । କୋର୍ଟ କଚେରୀକୁ ଯିବାକୁ ପଡ଼ିବ ନାହିଁ । ଆଚ୍ଛା, ତମେ ଲୁଗା କିଣା ରସିଦିଟା ରଖିଚ ?

ଫଗୁଆ : ଅଛି । (ଅଣ୍ଟାରୁ ବାହାର କରି) ଏଇଟା ତ ?

ଆଲୋକ : (ଦେଖିଲା) ହଁ, ଏଇଟା । ପ୍ରତି ଜିଲାରେ ଗୋଟିଏ ଲେଖା ଜିଲା ଖାଉଟି ଅଦାଲତ ଅଛି । ସେଇ ଅଦାଲତରେ କଥାଟା ପକାଇ ଦେଲେ ତମ ଲୁଗା ଦାମ୍‌ଟା ପାଇଯିବ ।

ମରୁଆ : ଦିନଟେଇତ ଜଟକେ ଯାଇଁକି ପଚିଶ, ତିରିଶ ଟଙ୍କା ଖରଚ କରିକି ଆଇଲେ ଏଇଲେ ପୁଣି ଜିଲା ଖାଉଟି ଅଦାଲତରେ ମକଦ୍ଦମା କଲେ, ଓକିଲ ଆଉ କାଗଜ ଖରଚା କାହିଁରେ କେତେ ପଡ଼ିବ । ଘୋଡା ଛଅ ଟଙ୍କାକୁ ଦାନା ନଅ ଟଙ୍କା, ହଇରାଣ ପନ୍ଦର ଟଙ୍କା ।

ଫଗୁଆ : ମକଦ୍ଦମା ଫକଦମା କଥା ମତେ କହନା ।

ଆଲୋକ : ଖରଚକୁ ଡରୁଚ କି ? କିଛି ଖର୍ଚ୍ଚ ପଡ଼ିବ ନେଇଁ । ସାଧା କାଗଜରେ ଦରଖାସ୍ତ ଲେଖା ହବ । ଷ୍ଟାମ୍ପ ପେପର କି କୋର୍ଟ ଫିସ୍ କିଛି ଲାଗିବ ନାହିଁ । ଓକିଲ ବି ଦରକାର ନାହିଁ । ତମେ ନିଜେ ନିଜ ମକଦ୍ଦମା ଲଢ଼ିବ ।

ଫଗୁଆ : ମତେ ସେ ସବୁ କିଛି ଆସିବ ନେଇଁ ।

ଆଲୋକ : ଆମ ଗାଉଁଲି ବିଚାର ଯେମିତି ଖାଉଟି ଅଦାଲତର ବିଚାର ସେମିତି ସହଜ ଓ ସରଳ । ତମକୁ ସେମାନେ ଯାହା ପଚାରିବେ ଠିକ୍ ଠିକ୍ ଉତ୍ତର ଦେବ । ତମେ କାହାଠୁ କେତେ ଟଙ୍କା ଦେଇ, କେମିତିଆ ଶାଢ଼ି କିଣିଥିଲ, ଆଉ ସେଟା କେମିତି ରଙ୍ଗ ଛାଡ଼ି ଗଲା ସେ କଥା କହିବ ।

ଆନଂଦ ଚଂଦ୍ର ପହି

ମରୁଥା : ତାଙ୍କୁ ଏ ସବୁ କିଛି ଆସିବ ନେଇଁ ।

ଆଲୋକ : ତାଙ୍କୁ କିଛି କରିବାକୁ ପଡିବ ନାହିଁ । ଆମ କ୍ଳବ ତାଙ୍କ ପାଇଁ ଲଢ଼ିବ । ଆମ କ୍ଳବ ଏକ ରେଜିଷ୍ଟ୍ରିଭୁକ୍ତ ଅନୁଷ୍ଠାନ । ଆମ କ୍ଳବର ନିୟମାବଳୀରେ ଖାଉଟି ସୁରକ୍ଷା କାର୍ଯ୍ୟକ୍ରମ ପାଇଁ ବ୍ୟବସ୍ଥା ଅଛି । ତମେ ଭୟ କରନା ମୁଁ ତମ ମକଦମା ଲଢ଼ିବି ।

ଫଗୁଆ : ଜମିବାଡି, କଳିଗୋଳ ପେଇଁ ମାଲି ମକଦ୍ଦମା ହୁଏନା, ଖଣ୍ଡେ ଲୁଗା ପେଇଁ କୋଉଠି କିଏ ମକଦ୍ଦମା କରେ ? ଲୋକେ ହସିବେ ନେଇଁ ?

ଆଲୋକ : ହସିବେ କାଇଁକି ? ଯୁଗ ବଦଳୁଚି । ଲୋକମାନେ ସଚେତନ ହେଉଚନ୍ତି । ହକ ପଇସା ଦେଇ ଆମେ ଖରାପ ଜିନିଷ ଆଣିବା କାଇଁକି ? ଖାଲି ଶାଢ଼ି ଦାମ୍ ନୁହଁ, ଏଥି ପାଇଁ ତମର ଯାହା ଯେତେ ଖର୍ଚ୍ଚ କରିଚ ତମେ ତାର କ୍ଷତି ପୂରଣ ଦାବି କରିବ ।

ଫଗୁଆ : ମୁଁ ଲୁଗା ଫେରେଇବାକୁ ଯାହା କଟକ ଯାଇଥିଲି ସେ ଖର୍ଚ୍ଚ ମିଳିବ ?

ଆଲୋକ : ନିଶ୍ଚୟ ମିଳିବ ।

ଫଗୁଆ : ଆଉ କ'ଣ ମିଳିବ ?

ଆଲୋକ : ଏ ମକଦ୍ଦମାରେ ତମର ଯାହା ଖର୍ଚ୍ଚ ହେବ ସେ ସବୁ ମିଳିବ ।

ଫଗୁଆ : ମତେ ଏଥିପାଇଁ କ'ଣ କରିବାକୁ ପଡିବ ?

ଆଲୋକ : ଗୋଟେ ସାଧା କାଗଜରେ ତମ ନାଆଁ ଆଉ ଠିକଣା, ଯାହା ବିରୁଦ୍ଧରେ ତମେ ଅଭିଯୋଗ କରୁଚ ମାନେ ସେ ଲୁଗା ଦୋକାନୀର ନାଆଁ ଆଉ ଠିକଣା, ତା'ପରେ ଅଭିଯୋଗର ବିବରଣୀମାନ ତମେ କେମିତି କେତେ ଟଙ୍କା ଦେଇ ଶାଢ଼ି କିଣିଲ ଆଉ ତାର ରଙ୍ଗ କେମିତି ଛାଡିଲା ଏସବୁ ଠିକ୍ ଠିକ୍ ଲେଖିବ ।

ଫଗୁଆ : ଏତିକି ନା ଆଉ କ'ଣ ଲେଖା ହେବ ?

ଆଲୋକ : ତମର କେତେ କ୍ଷତି ହୋଇଛି, କାହା ଯୋଗୁ ତମର ଏ କ୍ଷତି ହେଲା ଲେଖିବ । ଏ ସଂପର୍କରେ ତମ ପାଖରେ ଯଦି କିଛି କାଗଜାତ ପ୍ରମାଣ ଥାଏ ତା'ର ନକଲ ଦବ ।

ଫଗୁଆ : କାଗଜାତ ପ୍ରମାଣ କ'ଣ ?

ଆଲୋକ : ତମେ ସେ ଦୋକାନୀଠାରୁ ଶାଢ଼ି କିଣିଚ ବୋଲି ତା'ର ପ୍ରମାଣ ସ୍ୱରୂପ ଦୋକାନୀ ଗୋଟେ ରସିଦ ଦେଇଚି । ତା'ର ଗୋଟେ ଜେରକ୍ସ କପି ଦେଇ ଦେବ । ଏତିକି ଲେଖି ତା' ତଳକୁ ତମେ ତମ

ନାଆଁ ଦସ୍ତଖତ କରିଦେବ । ନିଜେ ନେଇ ଜିଲା ଖାଉଟି ଅଦାଲତରେ ଦାଖଲ କରିଦେବ ନ ହେଲେ ରେଜେଷ୍ଟ୍ରି ଡାକରେ ପଠେଇ ଦେବ ।

ଫଗୁଆ : ଶାଢ଼ିଟା ?

ଆଲୋକ : ଖାଉଟି ଅଦାଲତ ଚାହିଁଲେ ତୁମେ ବିଚାର ଦିନ ଶାଢ଼ିଟା ତାଙ୍କ ଆଗରେ ଦାଖଲ କରିବ ।

ମରୁଆ : ମକଦ୍ଦମା ତା'ହେଲେ ବରଷ ବରଷ ଲାଗିବ ?

ଆଲୋକ : ନାଇଁ, ନାଇଁ । ଏ ମକଦ୍ଦମାର ଫଳାଫଳ ଅତି ବେଶୀରେ ନବେ ଦିନ ଭିତରେ ଜଣା ପଡିବ । ତମେ ମୋ ସାଙ୍ଗରେ କ୍ଲବକୁ ଆସ ଫଗୁଆଭାଇ । ସେଇଠି ଦରଖାସ୍ତଟା ଲେଖି ଦେବା ।

ମରୁଆ : ମୋ ମୁହଁକୁ ଚାହୁଁଚ କ'ଣ ? ଆଲୋକଙ୍କ ସାଙ୍ଗରେ କ୍ଲବକୁ ଯାଉନ ।

ଆଲୋକ : ଆସ ଫଗୁଆଭାଇ ।

ଫଗୁଆ : ହଉ ଚାଲ ।

(ଆଲୋକ ଓ ଫଗୁଆର ପ୍ରସ୍ଥାନ । ମରୁଆ ସେମାନଙ୍କ ଗତିପଥକୁ ଚାହିଁ ରହିଲା)

ମରୁଆ : ଏ ଲୋକଙ୍କୁ ମୁଁ କେମିତି ଯେ ବୁଝେଇବି କିଛି ଠିକ୍ କହିପାରୁ ନାହିଁ ।

□□

## ଦ୍ୱିତୀୟ ଦୃଶ୍ୟ

(କଟକ ସହରର ଗୋଟିଏ ଟି.ଭି ଦୋକାନ । ଅପର୍ତ୍ତି ଟିଭିଟିଏ ଧରି ଗାଆଁରୁ ଆସିଚି । ଟି.ଭିଟି ଖରାପ ହୋଇଛି । ସମୟ ଦିନ ୧୨ ଟା)

ଅପର୍ତ୍ତି : (ଟିଭିଟିକୁ ଆଣି ଦୋକାନ ଆଗରେ ଥୋଇ) ହଇ ହୋ, ଦୋକାନୀବାବୁ !

ଗଗନ : କ'ଣ ହେଲା ?

ଆପର୍ତ୍ତି : ତମ ଟି.ଭି. ଏଇଠି ରହିଲା ।

ଗଗନ : ମୋ ଟି.ଭି । (ଆଶ୍ଚର୍ଯ୍ୟ ଭାବରେ)

ଆପର୍ତ୍ତି : ତମ ଟି.ଭି ନୁହଁ ଆଉ କାହା ଟି.ଭି ? ତମ ଦୋକାନରୁ ନେଇଥିଲି । ତମ ଟି.ଭି ତମେ ରଖ, ମୋ ଟଙ୍କା ଦିଅ । ଗଙ୍ଗା ଗଲି ଯେତିକି ଫଳ ପାଇଲି ସେତିକି । ଆଉ ନୁହଁ । ଢେର ହେଇଗଲା ।

ଗଗନ : ଟି.ଭି କ'ଣ ଖରାପ ହେଇଚି ନ କହି ଏମିତି ଆଲତୁ, ଫାଲତୁ କଥା କ'ଣ ଗପୁଚ ?

ଅପର୍ତ୍ତି : କଣ କହିଲ, ମୁଁ ଫାଲତୁ କଥା ଗପୁଚି ? ଆଁ କ'ଣ କହିଲ, ମୁଁ ଫାଲତୁ କଥା ଗପୁଚି ? ହଇ ହୋ ବାବୁ । ଆମେ ମଫସଲରୁ ଆଇଲୁ ବୋଲି ଆମେ ଫଲତୁ, ଆମ କଥା ଫାଲତୁ ?

ଗଗନ : ଏତେ କଥାରୁ କ'ଣ ମିଳିବ ତମ ଟିଭି କ'ଣ ହେଇଚି କୁହ ?

ଅପର୍ତ୍ତି : କ'ଣ ନ ହେଇଚି ପଚାର ?

ଗଗନ : ଆଚ୍ଛା ଲୋକ ଇଏ । ତମ ନାଆଁ କ'ଣ ?

ଅପର୍ତ୍ତି : ମୋ ନାଆଁରୁ କ'ଣ ପାଇବ ? ମତେ ଦେଖିବା ଦରକାର ନାହିଁ, ମୋ ଟିଭିକି ଦେଖ, ଟିଭିକି ।

ଗଗନ : ଟିଭିଟା କ'ଣ ଖରାପ ହେଇଚି ନ କହିଲେ କ'ଣଟା ଦେଖିବି ?

ଅପର୍ତ୍ତି : ଛବି ଆସିଲେ କଥା ଆସୁ ନେଇଁ, କଥା ଆସିଲେ ଛବି ଆସୁ ନେଇଁ ।

ଗଗନ : ଆଉ କ'ଣ ହଉଚି ?

ଅପର୍ତ୍ତି ବେଳେବେଳେ କଥା କି ଛବି, ଦିଇଟା ଯାଙ୍କ କିଛି ଆସୁ ନେଇଁ ।

ଗଗନ : ଆଉ କ'ଣ ଆସୁଚି ?

ଅପର୍ତ୍ତି : ଖାଲି ଗୋଟେ ଗାର ଆଉଚି ।

ଗଗନ : ତମର ଗ୍ୟାରେଣ୍ଟି ପିରିଅଡ୍ ସରିଗଲାଣି ?

ଅପର୍ତ୍ତି : ସରିଯିବ କ'ଣ ? ଟି.ଭି କିଣିବା ମୋଟେ ପାଞ୍ଚ ମାସ ହେଇଚି । ଗ୍ୟାରେଣ୍ଟି ପିରିଅଡ କେତେକି ?

ଗଗନ : ବର୍ଷେ । ତମ କାଗଜ ବାହାର କଲ ।

ଅପର୍ତ୍ତି : ହେଇ ନିଅ ।

ଗଗନ : (କାଗଜ ଦେଖି) ଠିକ୍ ଅଛି । ଆଉ ତମର ବ୍ୟସ୍ତ ହେବାର କିଛି ନାହିଁ । ଟିଭିଟା ଆଜି ଦେଇଯା, ଆଠ ଦିନପରେ ଠିକ ଆଜିର ବାର ଆସିବ । ସବୁ ଠିକ୍ଠାକ୍ କରି ରଖିଥିବି, ନେଇଯିବ ।

ଅପର୍ତ୍ତି : ଟି.ଭି ନବା ଜମା ୫ ମାସ ହେଇଚି ଏଥରକୁ ମିଶେଇ ଛ' ଥର ଖରାପ ହେଲାଣି । ଫି ଥର ଗାଡି ଖରଚ କରି, ଗାଆଁରୁ କାନ୍ଧରେ, ମୁଣ୍ଡରେ ଥୋଇ, ତମ ପାଖକୁ ଆଣୁଚି । ଆଠ, ପନ୍ଦର ଦିନ ଚାଲିବା ପରେ ପୁଣି ଖରାପ ହେଇ ଯାଉଚି ।

ଗଗନ : ଆମେ ତ ବିନା ପଇସାରେ ମରାମତି କରି ଦଉଚୁ ତମର କ'ଣ କ୍ଷତି ହେଇ ଯାଉଚି ? ଯେତେ ଥର ଖରାପ ହଉଚି ହଉ ।

ଅପର୍ତ୍ତି : ଆମର କିଛି କ୍ଷତି ହଉ ନେଇଁ ? ଏଇ ପାଞ୍ଚ ମାସ ଭିତରେ ଟିଭି ଖରାପ ରହିଚି ଥରେ ଆଠ ଦିନ, ଥରେ ଦଶ ଦିନ, ଆଉ ଥରେ ପନ୍ଦର ଦିନ, ଆଉ ଥରେ ସାତଦିନ, ପୁଣି ଥରେ ଏଗାର ଦିନ । ଏମିତି ଆଠ ଦିନ, ଦଶଦିନ ଇଏ ହେଲା ଅଠର ଦିନ । ଅଠର, ପନ୍ଦର ତେତିଶ୍ ଦିନ, ସାତ ଚାଳିଶ ଦିନ ଆଉ ଏଗାର ଦିନ ମିଶି ହେଲା ଏକାବନ ଦିନ । ତମ ପାଖକୁ ଟି.ଭି ଆଣିବା ଖର୍ଚ୍ଚା ଥରକୁ ପଚାଶ ଟଙ୍କା ହେଲେ ପାଞ୍ଚ ଥରକେ ଅଢ଼େଇଶ ଟଙ୍କା । ଏଥରକୁ ମିଶେଇଲେ ତିନିଶ ଟଙ୍କା ।

ଗଗନ : ମଣିଷ ଦିହ ବିଗିଡି ଯାଉଚି, ଇଏତ ସହଜେ କଳ କବଜା କଥା । ଟିଭି ଭିତରେ ଅସୁମାରୀ କଳକବଜା । କ'ଣ ଟିକେ ବିଗିଡି ଗଲେ ଗଲା । ଥରକୁ ଥର ବିଗିଡିବ ଆଉ ସଜଡା ହେବ । ବ୍ୟସ୍ତ ହେଲେ କ'ଣ ହବ ?

ଆନନ୍ଦ ଚନ୍ଦ୍ର ପହି

ଅପର୍ତ୍ତି : ବ୍ୟସ୍ତ ହେବି ନାହିଁ ? ତମେ ବିନା ପଇସାରେ ଆଉ ଛ' ସାତ ମାସ ସଜାଡ଼ିବ । ସେଇଠୁ, ଗ୍ୟାରେଣ୍ଟି ପିରିଅଡ ସରିଯିବ । ତା'ପରେ ଟିଭି ବିଗିଡି଼ଗଲେ ତମେ ଥରକୁ ଦେଢଶ, ଦୁଇଶ ଟଙ୍କା ହାଙ୍କିବ । ସେତେବେଳେ ?

ଗଗନ : ସମସ୍ତେ ସେମିତି ଦଉଚନ୍ତି ନା, ତମେ ଏକୁଟିଆ ?

ଅପର୍ତ୍ତି : ଆମ ଟିଭିକୁ ଛାଡି ଆମ ଗାଆଁରେ ଆହୁରି ଦଶଟା ଟିଭି ଅଛି । କାହିଁ, ସେ ସବୁତ ଏମିତି ଏତେ ଥର ଖରାପ ହଉ ନେଇଁ । ସେମାନେ ପଇସା ଦେଇ କିଣିଚନ୍ତି, ମୁଁ କ'ଣ ଗୋଡି ଦେଇ କିଣିଚି ? ମୋର ସଫା କଥା, ମୁଁ ଏ ଟିଭି ନେବି ନେଇଁ । ଏଇ ବାମ୍ରର ମତେ ଆଉ ଗୋଟେ ନୂଆ ଟିଭି ଦିଅ । ନହେଲେ ମୋ ପଇସା ଫେରେଇ ଦିଅ ମୁଁ ଯାଏ ।

ଗଗନ : ସେ ଗାଉଁଲି କଥା ଏଠି ଚଳିବ ନାହିଁ । ଗ୍ୟାରେଣ୍ଟି ପିରିଅଡ୍ ଭିତରେ ଯେତେଥର ବିଗିଡ଼ିବ ଆମେ ସେତେଥର ସଜାଡି଼ ଦେବୁ । ଗ୍ୟାରେଣ୍ଟି ପିରିଅଡ୍ ସରିଲେ ପଇସା ଦବ ସଜାଡିକି ନବ । ଏ ଦୁଇ କଥାରୁ ତୃତୀୟ କଥା ଆମେ ଜାଣି ନାହୁଁ । ଯା ବାବ ତମେ ଆଉ ଯାହା କହିବ ସେ କଥା ଆମେ ଶୁଣିବୁ ନାହିଁ ।

ଅପର୍ତ୍ତି : କ'ଣ କହିଲ, ଶୁଣିବ ନେଇଁ ? କିହୋ କାଇଁକି, ମୋ ଟଙ୍କାଗୁଡା କ'ଣ ପଚା, ସଢ଼ା, ନା ଚୀରା, ଫଟା ? ମୁଁ ଆଉ ଏତେ ଥର ଏ ଗଧ ବୋଝ ଗାଆଁରୁ କଟକ, ଆଉ କଟକରୁ ଗାଆଁକୁ ବୋହି ପାରିବି ନେଇଁ । ଏ ଟିଭିଟାର ତିଆରି ଦୋଷ ଅଛି । ସେଥିପାଇଁ ବାରମ୍ୱାର ବିଗିଡି ଯାଉଚି । ତମେ ଗୋଟେ କାମ କର ।

ଗଗନ : ଆଉ କି କାମ ?

ଅପର୍ତ୍ତି : ଏଟାକୁ ତମେ ରଖ, ମତେ ଆଉ ଗୋଟେ ଭଲ ନୂଆ ଟିଭି ଦିଅ ମୁଁ ଯାଏ ।

ଗଗନ : ହଇଓ ଟିଭିଟା କ'ଣ ଖଜା ନା ମୁଆଁ ହେଇଚି ଗୋଟେ ରଖି ଆଉ ଗୋଟେ ତମ ହାତରେ ଧରେଇ ଦେବି ତମେ ନେଇକି ଗାଆଁକୁ ଯିବ ।

ଅପର୍ତ୍ତି : ହଇହୋ ବାବୁ, ମୁଁ କ'ଣ କ୍ଷୀର ପିଆ ଛୁଆ ହେଇଚି ଯେ ମତେ ଖଜା, ମୁଆଁ ଦେଖଉଚ ? ମୁଁ ଆଜି ଏଇଠି ତମ ଦୋକାନ ଆଗରେ

ବସିଲି । ମୋ ଟଙ୍କା ନେବି, ନ ହେଲେ ଆଉ ଗୋଟେ ନୂଆ ଟିଭି ନେବି; ତା'ପରେ ଯାଇଁ ଏଠୁ ଉଠିବି ।

ଗଗନ : ଏଟାକୁ କ'ଣ ତୋ ଗାଆଁ ପାଇଲୁ କିରେ ମଫସଲି ଚୁଡା । ଉଠୁଚୁନା, ଦେଖିବୁ ଏଇନେ ।

ଅପର୍ତ୍ତି କ'ଣ ଦେଖେଉଚ ଦେଖା । ଯାହା ହେଲେବି ନୂଆ ଟିଭି, କି ମୋ ଟଙ୍କା, ଦି'କଥାରୁ ଗୋଟେ, ନେଲେ ଯାଇଁ ଉଠିବି ।

ଗଗନ : ଏଠି ଗୁଣ୍ଡା ଗିରି କାଢୁଚୁ କ'ଣ ବେ, ଭଲରେ ଭଲରେ ଯିବୁ ନା ମୋ ଲୋକଙ୍କୁ ଡାକିବି ?

ଅପର୍ତ୍ତି କ'ଣ ମତେ ବାଡ଼େଇବ ?

ଗଗନ ଆଉ କ'ଣ ତତେ ପୂଜା କରିବି ? ଉଠୁଚୁ ନା ଦେଖିବୁ ଏଇନେ । ପ୍ରହାଡ ସିଂ, ବିକ୍ରମ ଆରେ କୁଆଡ଼େ ସବୁ ଗଲ ? ଏଇଟାକୁ ପିଟିପିଟି ବିଦାକର ।

ଆଲୋକ : (ହଠାତ୍ ପ୍ରବେଶ କରି) ହଁ ହଁ, ଇଏ କ'ଣ ହଉଚି ?

ଅପର୍ତ୍ତି : ଭାରି ପିଟିଲାବାଲା, ପିଟିଲୁ ଦେଖି ।

ଆଲୋକ : ତମେ ବ୍ୟସ୍ତ ହୁଅନା ଅପର୍ତ୍ତି ଭାଇ ! କଥାଟା କ'ଣ ହେଉଛି ବୁଝିବା ।

ଗଗନ : ତମେ କିଏ ?

ଆଲୋକ : ମୁଁ ତାଙ୍କ ଗାଆଁ ଲୋକ । ଆମେ ସାଙ୍ଗ ହୋଇ କଟକ ଆସିଚୁ । ସିଏ ତମ ଦୋକାନକୁ ଟିଭି ସଜାଡିବାକୁ ଆସିଲେ, ମୁଁ ଅନ୍ୟ ଦୋକାନରୁ ସଉଦା କିଣୁଥିଲି ।

ଅପର୍ତ୍ତି : ଟିଭିଟା ବାରମ୍ବାର ଖରାପ ହଉଚି, ମୁଁ କହିଲି, ମୁଁ ଆଉ ଗୋଟେ ଟିଭି ନେବି, ଏଟା ନେବି ନେଇଁ । ଆଉ ଗୋଟେ ନୂଆ ଟିଭି ଦିଅ ନ ହେଲେ ଟିଭିର ଦାମ୍ ଫେରେଇ ଦିଅ । ଏତିକି କଥାରେ ମତେ ମାଡ ମାରିବାକୁ ଲୋକ ଲଗେଇ ଦଉଚି ।

ଗଗନ : ମୁଁ ତ କହଇଲି ତମର ଗ୍ୟାରେଣ୍ଟି ପିରିଅଡ୍ ଅଛି, ମୁଁ ମାହାଳିଆ ସଜାଡି ଦଉଚି ନେଇଯା । ଟିଭି କମ୍ପାନୀର ଯାହା ନିୟମ ମୁଁ ସେଇଆ କହିଲି । ଏ ମୂର୍ଖ ବୁଝୁନେଇଁ । କହୁଛି ମୁଁ ଅଲବତ ଆଉ ଗୋଟେ ନୂଆ ଟିଭି ନେବି, ନ ହେଲେ ମୋ ଟଙ୍କା ଫେରେଇ ନେବି । ଏଠି ଗୁଣ୍ଡାଗିରି କାଢୁଚି । କିକିକି କାଠ ମନେ କରିଚି ।

ଆନନ୍ଦ ଚନ୍ଦ୍ର ପହି

ବାଡ଼େଇକି ହାତ ଗୋଡ ଚୂନା କରିଦେବି । ଏଟା କଟକ ସହର ବୋଲି ପୁଅ ଜାଣି ନେଇଁ ପରା ।

ଅପର୍ତ୍ତି : କଟକ ହେଲା ସେଠୁ କ'ଣଟେ ହେଇଗଲା ? ନାଇଁ ନାଇଁ କଣ'ଟେ ହେଇଗଲା !

ଆଲୋକ : ଅପର୍ତ୍ତି ଭାଇ । ତମେ ଟିକେ ପାଟି ବନ୍ଦ କର । ଆଜ୍ଞା ଏ ଟିଭିଟା ଯଦି ବାରମ୍ବାର ଖରାପ ହେଉଚି ଆଉ ଗୋଟେ ଟିଭି ବଦଳାଇ ଦଉ ନାହାଁନ୍ତି ?

ଗଗନ : ଥରେ ପରା କହିଲି କମ୍ପାନୀର ସେମିତି କିଛି ନିୟମ ନାହିଁ ।

ଆଲୋକ : ଆଉ ଗୋଟେ ଟିଭି ତା'ହେଲେ ତମେ ଦବ ନେଇଁ ?

ଗଗନ : ତମେ କ'ଣ ମତେ ଧମକ ଦଉଚ ? ମୁଁ ଦେବି ନାହିଁ, ଦେବି ନାହିଁ, ଦେବି ନାହିଁ ! ଯା, ମୋର କ'ଣ କରିବ, କର ।

ଆଲୋକ : ହଉ ତୁମେ ଆସ ଅପର୍ତ୍ତି ଭାଇ । ଏମିତି କଳି ଗୋଳ କରି କିଛି ଲାଭ ନାହିଁ । ଚାଲ ଆମେ ଆଇନ୍‌ର ଆଶ୍ରୟ ନେବା । ବଳେ ନେଇ ନୂଆ ଟିଭି ନହେଲେ ଟଙ୍କା ଘରେ ଦେଇ ଆସିବେ । ଆସ, ଯିବା ଆସ ।

ଗଗନ : ଯା, ଯା, ମୋ ନାଆଁରେ ମକଦ୍ଦମା କରିବ ଯା । ତମ ଭଳିଆ କେତେ ମକଦ୍ଦମା କଲାବାଲା ମୁଁ ଦେଖିଛି । ମୋ ଘର କଟକ ଟାଉନ୍‌ରେ, ଇଏ ମଫସଲି ଆଇଲେ ମତେ କୋର୍ଟ, କଚେରୀ ଧମକ ଦବାକୁ ! ଫୁଟ୍ ।

(ଅପର୍ତ୍ତି ଓ ଆଲୋକ ଟି.ଭିଟା ଧରି ଦୋକାନରୁ ଚାଲିଗଲେ ।)



ଆନନ୍ଦ ଚନ୍ଦ୍ର ପହି

# ତୃତୀୟ ଦୃଶ୍ୟ

(ଗାଆଁର କଣ୍ଟ୍ରୋଲ ଦୋକାନ । ସମୟ ସଂଧ୍ୟା ।)

ଛଗୁଆ : କ'ଣ କହିଲ ? କିଛି ନାହିଁ ?

ନଟିଆ : ତୋ କାନରେ କ'ଣ କଣା ନାହିଁ ? ଥରେ ତ କହିଲି, ଏତେ ଫଟରେଇ ହଉଚୁ କ'ଣବେ ?

ଛଗୁଆ : ମୁଁ ତ ଏ ମାସରେ କିଛି ନେଇ ନେଇଁ, ମୋ ଭାଗ ଚିନି କିରୋସିନି, ଗହମ କୁଆଡ଼େ ଗଲା ?

ନଟିଆ : ଏଠି କ'ଣ ଭାଇ ଭାଗ ବଣ୍ଟା ହଉଚି ? ତୋ ଭାଗ କ'ଣ ? ଏତେ ହିସାବ ମୁଁ କାହାକୁ ଦେଇ ପାରିବି ନାହିଁ । ମାସର ଆଜି ୨୫ ତାରିଖ । ଆଜି ଯାଏ କୁଆଡ଼େ ଶୋଇଥିଲୁ ?

ଛଗୁଆ : ଆଠ ତାରିଖରେ ଆସିଥିଲି କହିଲ କଣ୍ଟ୍ରୋଲ ଜିନିଷ ଆସି ନେଇଁ । ପନ୍ଦର ତାରିଖରେ ଆସିଥିଲି ଦୋକାନ ବନ୍ଦ ଥିଲା । କୋଡ଼ିଏ ତାରିଖରେ ମୁଁ ଦେଖିକି ଗଲି ଦୋକାନ ଖୋଲା ଅଛି, ଘରୁ କାର୍ଡଟା ଆଣିକି ଆସିଲା ବେଳକୁ ଦୋକାନ ବନ୍ଦ କରି ଦେଇ ପଳେଇଲ । ଆଜି କଉଚ ସରିଗଲା ।

ନଟିଆ : ଦୋକାନ ଖୋଲା ଥିଲା ବେଳେ ଆସିକି ନବୁ ନା, ଆମେ କ'ଣ ତୋ ଘରେ ନେଇକି ଦେଇ ଆସିବୁ ?

ଛଗୁଆ : ଚିନି ସିନା ସରିଗଲା, ଗହମ, କିରାସିନ୍, ପାମଲିନ ଆଉ ଚାଉଳ ?

ନଟିଆ : ସବୁ ସରିଗଲାଣି ।

ଛଗୁଆ : ଆଉ ତା'ହେଲେ ଦୋକାନ କାଇଁକି ଖୋଲିକି ବସିଚ ?

ନଟିଆ : ସବୁବେଳେ କ'ଣ ଖାଲି ଜିନିଷ ଦିଆ ହଉଥିବ, ଖାତା ପତର ହିସାବ, କିତାବ ହବ ନେଇଁ ?

ଛଗୁଆ : ହଉ, ତମେ ସଫା ସଫା କହିଲ କିଛି ଦବକି ନାହିଁ ?

ଆନଂଦ ଚଂଦ୍ର ପହି

ନଟିଆ : ସେ କଥା କହୁନଉଁ ? ଏଇଠି ଦସ୍ତକତ କର ଟଙ୍କା ପକା ଅଢ଼େଇଶ ଚିନି, କିଲେ ଗହମ ଆଉ ଦିଉଶ କିରାସିନି ନେ ।

ଛଗୁଆ : ନଦବ ଯଦି ନାହିଁ, ଏଇଥାକୁ ନେଇ ମିଛରେ କାଇଁକି ନାଆଁ ସାଉିବି ?

ନଟିଆ : ଏ ମାସରେ ମାଲ୍ ନିଅଣ୍ଟ । ସବୁ ଅଧା, ଅଧା ଆସିଥିଲା । ତୁ ଠିକ୍ ଟାଇମରେ ଆସିଥିଲେ ଅଧା କୋଟା ନେଇ ଥାନ୍ତୁ । ମାସ ଶେଷ ହେଲାଣି । ଯାହା ଅଛି ସମସ୍ତଙ୍କୁ ବାଣ୍ଟିକୁଣ୍ଡିକି ଦେବିନା, ତୁ କ'ଣ ଏକୁଟିଆ ହେଉଚୁ ?

ଛଗୁଆ : ମୋର ସାତ ପ୍ରାଣୀ କୁଟୁମ୍ବ । ସବୁଥିରୁ ଦୁଇଶ, ଅଢ଼େଇଶ ନେଇ କ'ଣ କରିବି ?

ନଟିଆ : ହଉ ତୁ ନ ନେବୁ ଯଦି ପାଖା । ଶରତ ଆସିଲାଣି, ସିଏବି ନେଇ ନାହିଁ । ଶରତ ତୁ କାର୍ଡ ଆଣିଚୁ ?

ଶରତ : ଆଣିଚି ।

ନଟିଆ : କଣ ନବୁ କହ ?

ଶରତ : ଚିନି, ଗହମ, କିରାସିନି ଆଉ ପାମୋଲିନ୍ ।

ନଟିଆ : ପାମୋଲିନ ଏ ମାସରେ ଆସିନେଇଁ । ଚିନି, ଗହ୍ମ, କିରୋସିନ ଆସିକି ସରିଗଲାଣି । ଯାହା ଅଛି ନେଇ ନଥିବା ଲୋକଙ୍କୁ ବାଣ୍ଟିକି ଦେବି ।

ଶରତ : କେତେ ଲେଖାଁ ଦବ ?

ନଟିଆ : ଚିନି ଅଢ଼େଇଶ, ଗହମ କିଲେ, କିରାସିନି ଦିଇଶ ।

ଶରତ : ଏତେ କମ ନେଇ ମୁଁ କ'ଣ କରିବି ?

ନଟିଆ : କ'ଣ କରିବୁ ମାନେ ?

ଶରତ : ମାନେଟା କ'ଣ ତମେ ବୁଝିପାରୁନା ? ମାସ ଶେଷ ହେଉ କି ମାସ ଆରମ୍ଭ ହେଉ ଯିଏ ଜିନିଷ ନେଇ ନାହିଁ ତା ଜିନିଷ ସେମିତି ରହିବା କଥା ।

ନଟିଆ : କହୁ ନଉଁ ତାଙ୍କ ଘରେ ନେଇ ମୁଁ ଦେଇ ଆସିଥାନ୍ତି ।

ଶରତ : ତାଙ୍କ ଘରେ ଦେବ ଯଦି ପଛ ଦୁଆର ବାଟେ ରାତି ଅଧିଆ କାରବାର ହବ କେମିତି ?

ନଟିଆ : କ'ଣ କହିଲୁ ? ମୁଁ ତମ ଜିନିଷ କଳା ବଜାର କରୁଚି ? ଆଉ ଥରେ

କହିଲେ ତୋ ଜିଭ ଓଟାରି ଆଣିବି ।

ଶରତ : ସେ ବୀରପଣିଆ ନିଜ ଘରେ ଦେଖେଇବ । ଆଉ ଥରେ ଜିଭ ଓଟାରିବା କଥା କହିଲେ ତମ ବଡପଣିଆ ଛଡ଼େଇ ଦେବି ।

ନଟିଆ : ମୁଁ କାହାରିକି କିଛି ଦେବି ନାହିଁ, ମୋର କିଏ କ'ଣ କରିବ ଯା ।

ଶରତ : ତମେ କ'ଣ ତମ ନିଜ ହାତରୁ ଦଉଚକି ? ସରକାରୀ ଜିନିଷ ଆମ ପାଇଁ ଆସିଚି, ଆମେ ହକନାକେ ନବୁ । ତମେ ଦବ ନେଇଁ କ'ଣ ?

ନଟିଆ : ମୁଁ ତ କହିଲି ଦେବି ନେଇଁ, ତୁ କେମିତି ନବୁ ନେ ।

ଶରତ : ଦବ ନେଇ କଣ, ଦେଇ ଦେଇକି ଥକିବ । ଗାଆଁରେତ ଅନେକ ଲୋକ ଜିନିଷ ପାଇ ନାହାଁନ୍ତି, ଜିନିଷ କୁଆଡ଼େ ଗଲା ? କିଏ ସବୁ କେତେ ଲେଖା ନେଇଛନ୍ତି ଖାତା ଦେଖେଇଲ ।

ନଟିଆ : ତୁ କ'ଣ ମୋ ହାକିମ ? ଖାତା ଫାତା ମୁଁ କାହାକୁ ଦେଖେଇ ପାରିବି ନେଇଁ ।

ଜଗୁଆ : ବୁଝିଲ ଶରତବାବୁ । ଜିନିଷତ ବସ୍ତା ବସ୍ତା କି ଉଠେଇ ଦେଇଛନ୍ତି, ଏମିତି ଗାଲୁ ଭୁରୁଡ଼ ନମାରି କ'ଣ କରନ୍ତେ ।

ଶରତ : ଖୁବ୍ ହେଇଗଲା । କିଛି ଗୋଟେ ବ୍ୟବସ୍ଥା ନକଲେ....

ନଟିଆ : କିରେ ତୁ ଗୋଟେ କ'ଣ କରିବୁ ? କାହାର ଦଉଡ଼ କେତେ ବାଟ ମତେ କ'ଣ ଜଣା ନାହିଁ ?

ଶରତ : ତମେ କ'ଣ ଭାବିଚ, ଏ ଗାଆଁରେ ତମେ ଏକା ଅଣ୍ଡିରିପୁଅ ଆଉ ସମସ୍ତେ ମାଇଚିଆ ?

ନଟିଆ : ଯାବେ ତୋ ପରିକା ଅଣ୍ଡିରିପୁଅ ମୁଁ କେତେ ଦେଖିଚି । କାଲିକା ଲଣ୍ଡି ଶିରମେ ଜଟା । ଯା, ଗଲୁ ଦେଖିବା ମୋର କ'ଣ ଟେ ଆଲୁଅ କରି ପକେଇବୁ ।

ଶରତ : ତମେ କ'ଣ ଭାବିଚ ସମସ୍ତଙ୍କୁ ସବୁଦିନ ଏମିତି ବୋକା କରି ରଖିଥିବ ? ଲୋକଙ୍କ ଜିନିଷ କଳାବଜାର କରି ତମେ କୋଠା ଉପରେ କୋଠା ପିଟୁଚ, ଏକଥା କ'ଣ କାହାକୁ ଅଜଣା ଅଛି ?

ନଟିଆ : ମୁଁ କ'ଣ କାହାକୁ ଡ଼ରିଚି ? ହାତୀ ତା ବାଟରେ ଯାଉଚି, ଲକ୍ଷେ କୁକୁର ଭୁକିଲେ ତାର କ'ଣ ହେଇଯିବ ?

ଜଗୁଆ : କାହାରି ଗର୍ବ ଭଗବାନ ସହି ନାହାଁନ୍ତି । ରାବଣ ପରି ଧନବାଲା, ବଳୁଆ ଅସୁରର ଟାଣବି ଭାଙ୍ଗିଗଲା । ତମେ କି ଛାର ?

ଆନଂଦ ଚଂଦ୍ର ପହି

ନଟିଆ : ତୁ ତ ଏକୁଟିଆ ପୁରାଣ ଶାସ୍ତ୍ର ପଢ଼ିଚୁ, ଆଉ କିଏ ପଢ଼ିଚି କି ?

ଜଗୁଆ : ଏତେ ଅନ୍ୟାୟ ଭଗବାନ ସହିବେ ନେଇଁ ।

ନଟିଆ : ଭଗବାନଙ୍କ ନାଆଁ ମିଛରେ କାହିଁକି କହୁଚୁ, ମୋ ଉନ୍ନତି ଦେଖି ତମେ ସବୁ ସହି ପାରୁନା । ତମ କଳ, କୌଶଳ ମତେ ସବୁ ଜଣା ଅଛି ।

ଶରତ : ଲୋକଙ୍କୁ ଯାହାତ ଜିନିଷ ଦଉଚ, ତାକୁ ପୁଣି ବଟକରାରେ ଓଜନ ନକରି ଏ ପଥର ଗୁଡ଼ାକରେ ଓଜନ କରୁଚ ?

ନଟିଆ : ଆଜି କ'ଣ ନୂଆ ଦେଖିଲୁ ? ଏ ଚୋର ଗାଆଁରେ କିଛି ରହିବ ନା ରହିଚି ? ତିନି ତିନିଥର ବଟକରା କିଏ ନେଇଗଲା । ଆଉ କେତେ ଥର କିଣିଥାଚି ?

ଶରତ : ତମର ଏକଥା ଖାଲି ଧରମକୁ ଆଖିଠାର । ବଟକରା ଚୋର ନବା କଥା ଗୋଟେ ଆଳ, ଅସଲ କଥା ହେଲା ଲୋକଙ୍କୁ ଓଜନରେ ଠକିବାର ଭଏ ଗୋଟେ ଫନ୍ଦି ।

ନଟିଆ : ତୁ ତ ଖୁବ୍ ବଢ଼ି ବଢ଼ି କଥା କହୁଚୁ ? କାହାକୁ କେମିତି କଥାବାର୍ତ୍ତା କରିବାକୁ ହୁଏ ତୁ ଏଯାଏ ଶିଖିଲୁ ନେଇଁ । କି ପାଠ ପଢ଼ିଚୁ ତୁ ? ଛେନା ନା ଗୁଡ଼ ?

ଶରତ : ଅନ୍ୟାୟ ଆଉ ଦୁର୍ନୀତିକୁ ବେଶୀଦିନ ସହିବା ଠିକ୍ ନୁହଁ । ଆମେଏସବୁ ସହିଯିବାରୁ ତମେ ଆମକୁ ନିର୍ବୁଦ୍ଧିଆ ଆଉ ଦୁର୍ବଳ ବୋଲି ଭାବୁଛ । ହେଇତ ନିଧିଆଦି, ଫକିର ବଡ଼ପା, ସୁନାକର ଭାଇ ଆଉ ସନା ଆସିଲେଣି । ଏତିକି ନୁହଁ ଗାଆଁର ଅଧାରୁ ଅଧିକ ଲୋକଙ୍କୁ ତାଙ୍କ ଚିନି, ଗହମ, କିରାସିନି ନଦେଇ ତାକୁ ଭୂତୋଉଚ ।

ନଟିଆ : ତୁ ଯିବୁନା ଦେଖିବୁ ?

ଶରତ : ନା, ମୁଁ ଯିବି ନେଇଁ ।

ନଟିଆ : ଭଲ ଦଶା ଅଛି ଯଦି ଚୁପ୍ ଚାପ୍ ଉଠିଯା କହୁଚି ।

ଜଗୁଆ : ନା, ଆମେ ଉଠିବୁ ନାହିଁ । ତମେ କ'ଣ କରୁଚ କର ।

ଶରତ : ଭାଇମାନେ ! ଆମେ ଏ ଦୁର୍ନୀତି, ଏ ଅନ୍ୟାୟ ବରଦାସ୍ତ କରିବା ନାହିଁ । ଆମେ ଏ ଅନ୍ୟାୟର ଦୃଢ଼ ମୁକାବିଲା କରିବା ।

ସମସ୍ତେ : ହଁ, ହଁ ଆମେ ଏ ଅନ୍ୟାୟର ମୁକାବିଲା କରିବା । ଦୋକାନ ଲୁଟ

କରିବା ।

ଜଗୁଆ ଲୁଟ କରିବା । ମାଡ଼ି ଆସ ଭାଇମାନେ । ଦୋକାନ ଭିତରେ ପଶିଯାଅ ।

ସମସ୍ତେ : ହଁ, ହଁ ଦୋକାନରେ ପଶିବା । ଆଗକୁ ଆଗକୁ ମାଡ଼ିଚାଲ ।

ଶରତ : (ଚିତ୍କାର କରି) ନା । ନା ଭାଇମାନେ । ଅନ୍ୟାୟ ଓ ଦୁର୍ନୀତିର ବିରୋଧ କରିବାର ବାଟ ଇଏ ନୁହଁ । ବଳାତ୍କାରରେ ଲୁଟପାଟ କରିବା ଆଇନ ଆଖିରେ ଅପରାଧ । ଅନ୍ୟାୟର ପଥରୋଧ କରିବା ପାଇଁ ଆଇନବାଟ ଅଛି, ଆଇନ ବାଟ । ଆମେ ସେଇ ଆଇନ ବାଟରେ ଯିବା ।

ସମସ୍ତେ ଆଇନ ବାଟଟା କ'ଣ ?

ଶରତ : ଆମେ ସବୁ ଖାଉଟି । ଖାଉଟି ମାନଙ୍କ ସ୍ୱାର୍ଥର ସୁରକ୍ଷା ପାଇଁ ଖାଉଟି ଅଦାଲତ ଅଛି । ଆମେ ସେଇ ଅଦାଲତରେ ମକଦ୍ଦମା କରିବା । ସେଠି ଓକିଲ ଦରକାର ନାହିଁ, କୋର୍ଟଫିସ୍ ପଡ଼ିବ ନାହିଁ । ତିନିମାସ ଭିତରେ ଆମକୁ ନ୍ୟାୟ ମିଳିବ ।

ଜଗୁଆ : ଶରତବାବୁ ଯାହା କହୁଚନ୍ତି, ଆମେ ସେଇଆ କରିବା ।

ସମସ୍ତେ : ହଁ, ସେଇଆ କରିବା ।

ଶରତ : ଆପଣମାନେ ସମସ୍ତେ କ୍ଲବକୁ ଆସନ୍ତୁ, ସେଇଠି ଦରଖାସ୍ତ ଲେଖିବା, ଆପଣମାନେ ଦସ୍ତଖତ କରିବେ ।

ସମସ୍ତେ : ହଉ, ଚାଲ, ଚାଲ । (ସମସ୍ତେ ଚାଲିଗଲେ)

ନଟିଆ : ଯା, ତମର ଯୋଉଠି କି ଇଚ୍ଛା ସେଠିକି ଯା । ମୁଁ ଏମିତି କେତେ କୋର୍ଟ କଚେରୀ ଦେଖିଚି । ତମେ ସବୁ ଡ଼ାଳେ ଡ଼ାଳେ ଗଲେ ମୁଁ ପତ୍ରେ ପତ୍ରେ ଯିବି । ତମ ଦଉଡ଼ କେତେ ମତେ ଭଲ ଭାବେ ଜଣା । ଗାଆଁ ଛେଉଁଲେ ତମକୁ କାହାକୁ ବାଟ ଦିଶିବ ନେଇଁ । ହାତରେ ଟଙ୍କାଥିଲେ ସବୁ ବାଙ୍କକୁ ସଳଖ କରିହବ । ଯା, ଯା । ଯାହି କିଲେ, ଅଢ଼େଇଶ, ତୁଇଶ ନେଖା ଜିନିଷ ପାଇଥାନ୍ତ, ସେତକ ବି ଗଲା ।

□□

ଆନନ୍ଦ ଚନ୍ଦ୍ର ପହି

# ଚତୁର୍ଥ ଦୃଶ୍ୟ

(ସେଇ ଗାଆଁ । ଅନାଦି ସାହୁଙ୍କଘର । ମିଟର ରିଡ଼ର ଆସିଛି । କବାଟ ଖଡ଼ ଖଡ଼ କରିଛି । କବାଟ ଖୋଲିଛନ୍ତି ଅନାଦି ।)

ଅନାଦି : କିଏ ?

ମିଟର : ମୁଁ ।

ଅନାଦି : ମୁଁ ?

ମିଟର
ରିଡ଼ର : ମିଟର ରିଡ଼ର ।

ଅନାଦି : ଆମ ଗାଆଁକୁ ପନ୍ଦର ଦିନ ବିଜୁଳି ଆସିଲେ, ପନ୍ଦର ଦିନ ଅନ୍ଧାର । ଯୋଉ ପନ୍ଦର ଦିନ ବିଜୁଳି ରହୁଚି ସେଥିରୁ ଆଠଦିନ ଖରାବେଳେ ବିଜୁଳି ରହୁଚି । ସଂଜ ବେଳେ କି ରାତିରେ ରହୁନେଇଁ । ଆଉ ଯୋଉ ସାତଦିନ ରାତିରେ ବିଜୁଳି ରହୁଚି ଖାଲି ମିଞ୍ଜି ମିଞ୍ଜି ଆଳୁଅ । ସେଥିରେ ମୁହଁକୁ ମୁହଁ ଦୁଶୁନେଇଁ । ଏଥିରେ ତମେ ଖାଲି ବିଲ୍ ଉପରେ ବିଲ୍ ଦେଇ ଚାଲିଚ ।

ମି.ରି : ମୁଁ ସେଥିପାଇଁ କ'ଣ କରିବି ? ମୋ କାମ ହେଲା ମିଟର ରିଡ଼ିଙ୍ଗ୍ ନେବା, ଆଉ ବିଲ୍ ଦେବା ।

ଅନାଦି : ତମେ ଫି ମାସରେ ଯୋଉ ବିଲ୍ ଦଉଚ ସେସବୁ ଭୁଲ୍ । ଆମେ ଏତେ ଟଙ୍କା ବିଜୁଳି ଜାଳୁନଉଁ ।

ମି.ରି : ତମର ପ୍ରତିମାସରେ ମିନିମମ୍ ମାନେ ଅତିକମ୍ ବିଲ୍ ଦଉଚି । ଆଉ ଭୁଲ୍ ହେଲା କେମିତି ?

ଅନାଦି : କ'ଣ କହିଲ, ସବୁଠୁ କମ୍ ଟଙ୍କାର ବିଲ୍ ଦଉଚ ? ତମେ ତ ଆମ ଘରେ ଗୋଟେ ମିଟର ବସେଇଚ ସେଥିରେ ପ୍ରତିମାସରେ କେତେ ଉଠୁଚି ଦେଖୁଚ ?

ମି.ରି : ମୁଁ ମାନୁଚି ସେଥିରେ କମ୍ ଉଠୁଛି ।

ଆନଂଦ ଚଂଦ୍ର ପହି

ଅନାଦି : ତମେତ ମାନୁଚ ସେଥିରେ କମ୍ ଉଠୁଚି, ଆଉ ଏତେ ଅଧିକ ଟଙ୍କାର ବିଲ୍ କାହିଁକି ଦଉଛ ? ତମେ କ'ଣ ଭାବୁଚ ଆମ ମିଟର ଖରାପ ଅଛି ବୋଲି ?

ମି.ରି : ସେ କଥା ମୁଁ କେତେ ବେଳେ କହିଲି ?

ଅନାଦି ଆଉ ତା ହେଲେ ତମେ ଏତେ ଅଧିକ ଟଙ୍କାର ବିଲ୍ କାହିଁକି ଦଉଚ ?

ମି.ରି ଅଧିକା ଟଙ୍କା ନୁହଁ, ସବୁଠୁ କମ୍ ଟଙ୍କାର ବିଲ୍ ଦଉଚି ।

ଅନାଦି କିହୋ, ତମେତ ଖୁବ୍ ଅଦ୍‌ଭୂତ ଲୋକ ! ଯାଢ଼େ ମାନୁଚ ଯେ ତମେ ଦଉଥିବା ବିଲ୍‌ଠୁ ଆମ ମିଟରରେ କମ୍ ଉଠୁଚି, ପୁଣି କହୁଚ କ'ଣ ନା ମୁଁ ପ୍ରତିମାସରେ ସବୁଠୁ କମ୍ ଟଙ୍କାର ବିଲ୍ ଦଉଚି ।

ମି.ରି ମୁଁ ମାନୁଚି । ତମ ମିଟରରେ କମ୍ ଉଠୁଚି । କିନ୍ତୁ ପ୍ରତିଘର ପାଇଁ ମାସକୁ ଅତିକମ୍‌ରେ କିଛି ଟଙ୍କା ଦେବାକୁ ପଡ଼ିବ । ତମ ମିଟରରେ ସେତିକି ଟଙ୍କା ଉଠୁକି ନଉଠୁ । ତମେ ଘରକୁ ବିଜୁଳିତାର ନେଇଚ ମାନେ ସେତିକି ଦେବାକୁ ବାଧ ।

ଅନାଦି : ଇଏ କି ଅନ୍ୟାୟ କଥା ? ଆମେ ଯେତିକି ବିଜୁଳି ଜାଳିବୁ ସିନା ସେତିକି ପଇସା ଦବୁ, କମ ବିଜୁଳି ଖର୍ଚ୍ଚ କରି ବେଶୀ ପଇସା କାଇଁକି ଦେବୁ ? ଏ ଟାଡ ପୂରାପୂରି ଅନ୍ୟାୟ ।

ମି.ରି : ତମେ ମୋଟେ ବିଜୁଳି ବ୍ୟବହାର କର କି ନକର, ସେଥିରେ କିଛି ଯାଏ ଆସେ ନାହିଁ । ତମେ ଜଣେ ବିଜୁଳି ଗ୍ରାହକ ହିସାବରେ ତମ ଘରର ସୁଇଚ, ପ୍ଲଗ୍ ଗଣିକି ଗୋଟେ ମିନିମମ୍ ଫିକ୍ସ କରାଯାଇଚି । ମାନେ ତମଠୁ କେତେ ଟଙ୍କା ପ୍ରତିମାସରେ ଆଦାୟ ହେବା କଥା ତାହା ସ୍ଥିର କରାଯାଇଛି । ତାଠୁ କମ୍ ଟଙ୍କାର ବିଲ୍ ମୁଁ ଦେଇ ପାରିବି ନେଇଁ ।

ଅନାଦି : ଯଦି ମିଟର ଅନୁସାରେ ପଇସା ନବ ନେଇ ତାହେଲେ ସେଟା ବସେଇଚ କାଇଁକି ?

ମି.ରି : ଯୋଉଠି ମିଟରରେ ମିନିମମ୍ ବିଲ୍‌ଠୁ ଅଧିକ ଟଙ୍କା ଉଠିବ ସେଇଠି ଆମେ ମିଟର ଅନୁସାରେ ବିଲ୍ କାଟିବୁ ।

ଅନାଦି : ଇଏତ ଖୁବ୍ ଅନ୍ୟାୟ କଥା । ଯେତିକି ବିଜୁଳି ଜାଳିବୁ ତାଠୁ ଅଧିକ ପଇସା ଦବୁ?

ମି.ରି : ଅଧିକ ବିଜୁଳି ବ୍ୟବହାର କରିବାକୁ ତୁମକୁ କିଏ ମନା କରୁଚି ?

ଅନାଦି : ଗାଆଁରେ ବିଜୁଳି ଲାଇନ ରହିଲେ ସିନା ଆମେ ଜାଳିବା ନ ଜାଳିବା ପ୍ରଶ୍ନ ଉଠିବ ?

ମି.ରି : ମୁଁ ଏତେ କଥା କହି ପାରିବି ନାହିଁ । ତମ ଘରର ବିଲ୍ ପଇସା ଛ ମାସ ହେଲା ତମେ ପଇଠ କରିନା । ତୁମ ଘରର ଲାଇନ କାଟି ଦିଆଯିବ ।

ଅନାଦି : ଲାଇନ କାଟିଦେବ ? ଭାରି କାଟିଲା ବାଲା ? ଯିଏ ଲାଇନ୍ କାଟିବାକୁ ଆସିବ ତା ବେକଟାକୁ କାଟିକି ଏଇଠି ରଖିଦେବି ।

ମି.ରି : ଆପଣ ମିଛଟାରେ ରାଗୁଚନ୍ତି କାଇଁକି ? ନିୟମ ଯାହା ମୁଁ କହିଲି । ତେଣିକି ମାନିବା ନ ମାନିବା ତମଇଚ୍ଛା ।

ଅନାଦି : ରାଗିବି ନେଇଁ ? ମାସକୁ ଦଶ ପନ୍ଦର ଦିନ ଆମେ ଆଲୁଅ ଜାଳୁଚୁ କି ନାହିଁ ଠିକଣା ନାହିଁ, ସେଥିରେ ଶହ ଶହ ଟଙ୍କାର ବିଲ୍ । ଯିଏ ବେଆଇନ୍ ଭାବେ ହୁକ୍ ପକେଇ ଜାଳୁଚନ୍ତି, ତାଙ୍କର ବିଲ୍ ଫିଲ୍ କିଛି ନାହିଁ । ସିଏ ମୋଫତ ଜାଳୁଚନ୍ତି । ଆଉ ଆମେ ଯୋଉମାନେ ନିୟମ ଅନୁସାରେ ଟଙ୍କା ଦାଖଲ କରି ଲାଇନ୍ ଆଣିଚୁ ସେଇମାନେ ହଇରାଣ । ଯେତିକି ବିଜୁଳି ଜାଳୁଚୁ ତାଠୁ ବେଶି ବିଲ୍ ଆମଠେଇଁ ନଗଉଚ ।

ମି.ରି : ତମେ ଯାଇ ଆମ ଅଫିସରଙ୍କ ସାଙ୍ଗରେ କଥାବାର୍ତ୍ତା କରି ଅଧା ଅଧିଟଙ୍କା ଦାଖଲ କରିଦିଅ, ବାକି ଟଙ୍କା ପାଇଁ କିସ୍ତି କରି ଦିଅ ନହେଲେ ତମ ଘରର ଲାଇନ୍ କାଟିଦିଆଯିବ । ଏଇଟା ନାଲି ନୋଟିସ ରଖ, ଏଇଠି ଗୋଟେ ଦସ୍ତଖତ କର ।

ଅନାଦି : (ଚିତ୍କାର କରି) ମୁଁ କିଛି ନୋଟିସ୍ ଫୋଟିସ୍ ରଖିବି ନାହିଁ । ତମେ ସେଟାକୁ ନେଇକି ମୋ ଆଗରୁ ଗଲ । ଆରେ ଯା, କହୁଚି ।

ମି.ରି : ମୋ ଉପରେ ଏମିତି ରାଗିଲେ କ'ଣ ହବ ?

ଅନାଦି : କେହି ଭଲ ଲୋକ ନୁହଁ । ତମେ ଯାଉଚ ନା ଦେଖିବ ଏଇନେ ।

ଶରତ : (ପ୍ରବେଶ କରି) ତାଙ୍କ ଉପରେ ରାଗିକି କିଛି ଲାଭ ନାହିଁ ଅନାଦିଭାଇ । ତମେ ସେ ନୋଟିସ୍ ରଖ ।

ଅନାଦି : ନା, ସେ ନୋଟିସ୍ ଫୋଟିସ୍ ମୁଁ କିଛି ରଖିବି ନେଇଁ । ମୋର କିଏ କ'ଣ କରିବ ମୁଁ ଦେଖିବି । ଯୋଉ ଶଳା ମୋ ଘରୁ ଲାଇନ୍ କାଟିବାକୁ ଆସିବ ତା ବେକଟାକୁ ମୁଁ ଏଇଠି ରଖିନେବି ।

ଶରତ : ଏମାନଙ୍କ ସାଙ୍ଗରେ କଳିଗୋଳ କଲେ କିଛି ଫାଇଦା ନାହିଁ । ଆଇନ ବାଟରେ ଆମେ ତାଙ୍କ ସାଂଗରେ ଲଢ଼ିବା ।

ଅନାଦି : ସବୁ ଆଇନ୍ ସେଇ ବଡ଼ ବଡ଼ିଆଙ୍କ ପାଇଁ । ଆମ ଗରିବଙ୍କ ହାତ ସେଠିକି ପାଇବ ନାହିଁ । ମକଦ୍ଦମା କରିବା ପାଇଁ ଆମ ହାତରେ ଟଙ୍କା କାଇଁ ?

ଶରତ : ଟଙ୍କା ପଇସା କିଛି ଦରକାର ନାହିଁ । ତମେ ନାଲି ନୋଟିସ୍ ଟା ଦସ୍ତକତ କରି ତାଙ୍କଠୁ ରଖ । ତାହାରି ବଳରେ ଆମେ ଖାଉଟି ଅଦାଲତକୁ ଯିବା ।

ମି.ରି : ଆପଣ ଯୋଉ ଅଦାଲତକୁ ଯିବେ ଯାଆନ୍ତୁ । ମିନିମମ୍ ବିଲ୍ ଯେତିକି ସେତିକି ଆପଣଙ୍କୁ ଦେବାକୁ ପଡ଼ିବ ।

ଶରତ : ଆପଣ ଖାଉଟି ଅଦାଲତ ବିଷୟରେ କିଛି ଜାଣିଛନ୍ତି ?

ମି.ରି : ନା, କିନ୍ତୁ....

ଶରତ : କିନ୍ତୁ ଫିନ୍ତୁ କିଛି ନାହିଁ । ଆମେ ଖାଉଟି । ଆମେ ଯେତିକି ପଇସା ଦେବୁ ଅତିକମ୍‌ରେ ସେତିକି ବିଜୁଳି ସେବା ପାଇବା ଆମର ଅଧିକାର । ଅନାଦି ଭାଇଙ୍କ ଘରେ ଆପଣଙ୍କର ଯୋଉ ମିଟର ବସିଛି ସେଥିରେ ଯେତିକି ରିଡ଼ିଂଙ୍ଗ ଉଠିଛି ସିଏ ସେତିକି ଟଙ୍କା ଦେବେ । ତାଠୁ ଗୋଟିଏ ପଇସା ଅଧିକ ନେବା ଅଧିକାର କାହାର ନାହିଁ । ଆମକୁ ସେଇ ସୁରକ୍ଷା ଯୋଗାଇ ଦେବା ପାଇଁ ଖାଉଟି ସୁରକ୍ଷା ଅଦାଲତ ଅଛି ।

ଅନାଦି : ହଁ, ଶରତ । ତୁ ଠିକ୍ କହିଚୁ । ଯଦି ଏମିତି ଗୋଟେ ଅଦାଲତ ଅଛି ତାହେଲେ ଆମେ ସେଇଠି ମକଦ୍ଦମା କରିବା ।

ଶରତ : କେବଳ ତମ ଘର ନୁହଁ ଅନାଦି ଭାଇ । ଆମ ଗାଆଁରେ ଯେତେଲୋକ ଟଙ୍କା ଦାଖଲ କରି ଘରକୁ ବିଦ୍ୟୁତ ଲାଇନ୍ ନେଇଚନ୍ତି, ସମସ୍ତଙ୍କର ଏମିତି ଭୁଲ୍ ବିଲ୍ ଆସୁଚି । ତମେ ସେ ନାଲିନୋଟିସ୍‌ଟା ରଖ ।

ଅନାଦି : ହଉ, ତାହେଲେ ଦିଅ ସେ ନୋଟିସ୍ ।

ମି.ରି : ନିଅ । ଏଇଠି ଗୋଟେ ଦସ୍ତଖତ କର ।

ଅନାଦି : ଏଇଠି ତ ?

ମି.ରି : ଆଉ ଟିକେ ତଳକୁ ।

ଅନାଦି : ହେଲା ?

ମି.ରି : ହଁ, ମୁଁ ଏଥର ଯାଉଚି ଆଜ୍ଞା ।

ଶରତ : ହଉ, ତମେ ଯା । (ମିଟର ରିଡ଼ର ଚାଲିଗଲା)
ଅନାଦି ଭାଇ ! ତମେ ଆଜି ସଂଧ୍ୟାରେ କ୍ଲବ ଘରକୁ ଆସ । ଗାଆଁର ଆଉ ଯାହା ଘରେ ଏମିତି ନାଲିନୋଟିସ ଲାଗିଛି ସବୁ ଏକାଠି କରି ଖାଉଟି ଅଦାଲତକୁ ଗୋଟେ ଦରଖାସ୍ତ କରିଦେବା । ସମସ୍ତେ ସେଥିରେ ଦସ୍ତଖତ କରିବେ । ମୁଁ ଯାଉଚି, ତମେ ସଂଜ ବେଳେ କ୍ଲବକୁ ଯିବ ।

ଅନାଦି : ହଉ ।
(ଶରତର ପ୍ରସ୍ଥାନ)

□□

# ପଞ୍ଚମ ଦୃଶ୍ୟ

(ସେଇ ଗାଆଁର ଫକୀର ତେଜରାତି ଦୋକାନ । ଦୋକାନରେ ବିକ୍ରିଖର୍ଚ୍ଚ ଚାଲିଛି । ଦୋକାନକୁ ଆସିଲା ସନିଆ । ଶରତ ଓ ଆଲୋକ ଦୋକାନ ପାଖରେ ଅଛନ୍ତି ।)

ସନିଆ : ଫକୀର ! ଦେଲୁ ଆଉ ଗୋଟେ ହଳଦୀ ଗୁଣ୍ଡ ପାକିଟି ଦେ ।

ଫକୀର : କୋଉ ହଳଦୀ ? କେତେ ବାଲା ପାକିଟି ଦେବି ?

ସନିଆ : କାଲି ଯୋଉ ପାକିଟି ଦେଇଥିଲୁ, ସେଇ ପାକିଟି, ହଁ, ସେଇ ଅଢ଼େଇଶ ବାଲା ପାକିଟି ।

ଫକୀର : କ'ଣ ଭଲ ପଡ଼ିଲାଟି ? ମୁଁ ପରା ଜାଣେ, ଏ ପାଞ୍ଚଖଣ୍ଡ ଗାଆଁରେ ମୋ ଦୋକାନ ଜିନିଷ ସାଙ୍ଗରେ କାହାରି ଜିନିଷ ସମାନ ହବ ନେଇ । ହଉ ନେ ।

ସନିଆ : (ସନିଆ ହଳଦୀ ପ୍ୟାକେଟ୍ ଟି ଆଣି ଏପଟ ସେପଟ କରି ଦେଖିଲା ।)

ଫକୀର : ଆରେ ଦେଖୁଛୁ କ'ଣ ? କାଲି ଯୋଉ ଜିନିଷ ଦେଇଥିଲି ସେଇ ଜିନିଷ ଅଛି । ଦେ, ବଢ଼ା ୨୦ ଟଙ୍କା ।

ସନିଆ : (ପଇସା ଦେଲା) ଏ ପକିଟ ଉପରେ କ'ଣ କିଛି ଲେଖା ହେଇ ନେଇଁ ?

ଫକୀର : ଲେଖା ଫେଖାରୁ କ'ଣ ପାଇବୁ ? ଜିନିଷ ଭଲ ପଡ଼ିଲେ ଗଲା ।

ସନିଆ : ଏଥିରେ କେତେ ହଳଦୀ ଅଛି ଆଉ କେବେ ପକିଟି ବନ୍ଧା ହେଇଚି ସେକଥା କିଛି ଲେଖା ହେଇନେଇଁ ।

ଫକୀର : ତୁ ସିନା ମୂରୁଖ ଲୋକ ? ଏ ଆଲୋକ, ଶରତ ତ ଏଇଠି ଅଛନ୍ତି, ତାଙ୍କୁ ପଚାରୁ ନଇଁ ?

ଆଲୋକ : କ'ଣ ଫକୀର ଭାଇ ?

ସନିଆ : ତୁ ଦେଖି ଆଲୋକ ଏ ହଳଦୀ ପାକିଟି ଟାରେ କିଛି ଲେଖା

ହେଉନେଇ ଆଉ ଫକୀର କହୁଚି ଏଥିରେ ଅଢ଼େଇଶ ହଳଦୀ ଗୁଣ୍ଡ ଅଛି, ଆଉ ଭଲ ହଳଦୀ ।

ଆଲୋକ : ଇଏ କେମିତି କଥା ? ପ୍ୟାକେଟ ଉପରେ କଂପାନୀ ନାଆଁ, ଓଜନର ପରିମାଣ ଆଉ ପ୍ୟାକେଟ୍ ହେବାର ତାରିଖ ଆଉ ମୂଲ୍ୟ ସ୍ପଷ୍ଟ ଭାବରେ ଲେଖାଯିବା କଥା ।

ଫକୀର : ମତେ କ'ଣ ତମର ସବୁ ବିଶ୍ୱାସ ନାହିଁ ?

ଶରତ : ଏଠି ବିଶ୍ୱାସ ଅବିଶ୍ୱାସର କଥା ବଡ଼ କଥା ନୁହଁ । ବଡ଼ କଥା ହେଉଛି ଖାଉଟି ସୁରକ୍ଷା । ଖରିଦ୍‌ଦାର ହକ ପଇସା ଦେଇ ଜିନିଷ ନେବ, ତାର ଗୁଣ, ଓଜନ, ଦାମ ନଦେଖିବ କାହିଁକି ?

ଫକୀର : ତମେ ସବୁ ମିଛରେ ପାଣି ଗୋଳିଆ କରୁଚ । ସନିଆକୁ ପଚାର । ସିଏ କାଲି ଏଇ ହଳଦୀ ଗୁଣ୍ଡ ପ୍ୟାକେଟ୍‌ରୁ ଗୋଟେ ନେଇଥିଲା । ସେଟା ଭଲ ପଡ଼ିଲା ବୋଲି ଆଜି ଆସିଚି ଆଉ ଗୋଟେ ନବ ।

ସନିଆ : ନା, କଥାଟା ତାର ଓଲଟା । ମୁଁ କାଲି ଯୋଉ ହଳଦୀଗୁଣ୍ଡ ପାକିଟ୍ ନେଇଥିଲି ସେଥିରେ କରତ ଗୁଣ୍ଡ ଆଉ ଚାଉଳ ଗୁଣ୍ଡ ମିଶିଚି । ମୁଁ ଆସିଚି ଆଜି ସେଇ ହଳଦୀ ଗୁଣ୍ଡ ପାକିଟ୍ ଆଉ ଗୋଟିଏ କିଣି ନେଇ ଖାଉଟି ଅଦାଲତକୁ ପଠେଇବି ।

ଫକୀର : ଖାଉଟି ଅଦାଲତ ? ସେଟା ପୁଣି କ'ଣ ? ସିଏ ମୋର କ'ଣ କରିବ ? ତୋ ଇଚ୍ଛା ଯାହା କରୁଚୁ କର, ଯୁଆଡ଼େ ପଠଉଚୁ ପଠା ।

ଆଲୋକ : ଫକୀର ଭାଇ, ତମେ ଏ ହଳଦୀ ଗୁଣ୍ଡ ପ୍ୟାକେଟ୍ ବିକ୍ରିକରିଛ ବୋଲି ଗୋଟେ ରସିଦ ଦିଅ ।

ଫକୀର : ରସିଦ ଫସିଦ ମୁଁ କିଛି କାହାକୁ ଦେଇ ପାରିବି ନେଇଁ । ତମେ ଏଠୁ ଫୁଟିଲ ଫୁଟ । ଆରେ କିଛି ନ କହିବାରୁ ଏଠି ଗୋଟେ ପାଲା ନଗେଇଚନ୍ତି । ଓହ୍ଳା, ମୋ ଦୋକାନ ପିଣ୍ଡାରୁ ତମ୍ଭେ ସବୁ ଶୀଘ୍ର ଓହ୍ଳା, ମୁଁ ଦୋକାନ ବନ୍ଦ୍ କରିବି ।

(ଫକୀର ଦୋକାନ ବନ୍ଦ୍ କରିଦେଲା)

ସନିଆ : ଆରେ ଫକୀର, ଦେ ଗୋଟେ ରସିଦ୍ ଦେ ।

ଫକୀର : (ଛାତି ପିଟ ହୋଇ ପଳାଇଗଲା) ଯାବେ, ରସିଦ ଫସିଦ ମୁଁ କାହାକୁ ଦେଇ ପାରିବି ନେଇ । ଇଏ ଆମର ଦେଶୀ ଜିନିଷ । ମୁଁ କୋଉଠୁ ରସିଦରେ ଜିନିଷ ଆଣିନେଇ କି ମୁଁ କାହାକୁ ରସିଦ ଦେଇ

ପାରିବି ନାହିଁ । (ପ୍ରସ୍ଥାନ)

ଶରତ : ତମେ ସନିଆ ଭାଇ କିଛି ଚିନ୍ତା କରନା । ସିଏ ରସିଦ ନଦେଉ । ତମେ ଫକୀର ଦୋକାନରୁ ଏ ଜିନିଷ କିଣିବା ବେଳେ ଆମେ ଦେଖିଛୁ ବୋଲି ସାକ୍ଷୀ ଦେବୁ ।

ଆଲୋକ : ହଁ ଶରତ ଆଉ ମୁଁ ସାକ୍ଷୀ ପଡ଼ିବୁ । ଚାଲ ଆମ କ୍ଲବକୁ ଚାଲ ସେଇଠି ଗୋଟେ ଦରଖାସ୍ତ ଲେଖି ଦେବା । ତମେ ଏ ହଳଦୀ ପ୍ୟାକେଟ୍ ଆଉ ଦରଖାସ୍ତ ନେଇ ଜିଲ୍ଲା ଖାଉଟି ଅଦାଲତରେ ଦେଇ ଆସିବ ।

ସନିଆ : ମୁଁ ତ ଏସବୁ କିଛି ଜାଣିନେଇଁ । ଯାହା ଯେମିତି ଦରକାର ପଡ଼ିବ ତମେ ସବୁ କରିବ ।

ଶରତ : ଆସ, କ୍ଲବକୁ, ଆସ ।

ସନିଆ : ହଉ ଚାଲ ।

(ସନିଆ, ଶରତ ଓ ଆଲୋକଙ୍କର ପ୍ରସ୍ଥାନ)



ଆନନ୍ଦ ଚନ୍ଦ୍ର ପହି

## ଷଷ୍ଠ ଦୃଶ୍ୟ

(ଜିଲ୍ଲା ଖାଉଟି ସୁରକ୍ଷା ଅଦାଲତ । ବିଚାରପତି ଗୋଟିଏ ଉଚ୍ଚ ଚେୟାରରେ ବସିଛନ୍ତି । ପେସ୍କାର ଗୋଟିକ ପରେ ଗୋଟିଏ ମକଦ୍ଦମା ପେଶ୍ କରୁଛନ୍ତି ।)

ପେସ୍କାର : ଆଜିର ପ୍ରଥମ ମକଦ୍ଦମା- ଫଗୁ ନାୟକ ବନାମ ଲୁଗାଦୋକାନୀ ଛଗନ ଅଗ୍ରୱାଲ୍ ।

ବିଚାରପତି : ଆପଣଙ୍କ ନାଆଁ ।

ଫଗୁଆ : ଫଗୁଆ ନାୟକ ।

ପେସ୍କାର : ସତ୍ୟ ପାଠ କରନ୍ତୁ ।

ଫଗୁଆ : ସିଏ ପୁଣି କ'ଣ ?

ପେସ୍କାର : କୁହନ୍ତୁ- ଯାହା କହିବି ସବୁ ସତ କହିବି ।

ଫଗୁଆ : ଯାହା କହିବି ସବୁ ସତ କହିବି ।

ପେସ୍କାର : ସତ୍ୟ ବିନା ଅନ୍ୟ କିଛି କହିବି ନାହିଁ ।

ଫଗୁଆ : ସତ ବିନା ଅନ୍ୟ କିଛି କହିବି ନାହିଁ ।

ବିଚାରପତି : ଏଥର ଆପଣଙ୍କ ଅଭିଯୋଗ ପ୍ରକାଶ କରନ୍ତୁ ।

ଫଗୁଆ : ହଜୁର୍, ମୁଁ ଏଇ ଲୁଗା ଦୋକାନୀଠାରୁ ମୋ ସ୍ତ୍ରୀଙ୍କ ପାଇଁ ଖଣ୍ଡେ ଶାଢ଼ି ଦେଢ଼ଶ ଟଙ୍କା ଦେଇ କିଣିଥିଲି । ନୂଆ ଶାଢ଼ିଟାକୁ ମୋ ସ୍ତ୍ରୀ ପାଣିରେ ବତୁରେଇ ଦେଲା । ଶାଢ଼ିରୁ ମାଟି ଗୋଳିର ପାଣି ନେଖାଁ ରଙ୍ଗ ବୋହିଯାଇ ଛୁଞ୍ଚୁକନାମିତି ହେଇଗଲା ।

ମରୁଆ : ଆମେ ଗରିବ ଲୋକ ହଜୁର । ଦେଢ଼ଶ ଟଙ୍କା ଆମ ପେଇଁ ଖୁବ୍‌ବେଶୀ । ଏ ସହରୀ ଲୋକମାନେ ଆମକୁ ଠକୁଚନ୍ତି । ଆପଣ ହଜୁର ନ୍ୟାୟ ବିଚାର କରନ୍ତୁ ।

ପେସ୍କାର : ତମେ କିଏ ?

ମରୁଆ : ମୁଁ ତାଙ୍କ ସ୍ତ୍ରୀ । ଏ ଶାଢ଼ି ମୋ ପାଇଁ କିଣା ହେଇଥିଲା । ଶାଢ଼ିଟାକୁ ମୁଁ ପାଣିରେ ବତୁରେଇଥିଲି, ଧୋଇଗଲା ।

ଆନନ୍ଦ ଚନ୍ଦ୍ର ପହି

ପେସ୍କାର : ତମେ ଚୁପ୍‌ହୋଇ ବସ୍ । ତମ ସ୍ୱାମୀ, ଆସିଚନ୍ତି ସିଏ କହିବେ । ଆଚ୍ଛା ଫଗୁ ନାୟକ । ସେ ରଙ୍ଗଛଡ଼ା ଶାଢ଼ି ଆଉ ଲୁଗାଦୋକାନର ମୂଳ ରସିଦ ଦାଖଲ କର ।

ଆଲୋକ : ମୁଁ ଆଜ୍ଞା ଆମ ଗାଁ କ୍ଲବର ଜଣେ ସଭ୍ୟ । ଫଗୁ ନାୟକଙ୍କ ଗାଆଁରେ ମୋ ଘର । ମୋ ନାଆଁ ଆଲୋକ ମହାପାତ୍ର ।

ଫଗୁଆ : ମୋ ପେଇଁ ଆଲୋକ ମକଦ୍ଦମା ଲଢ଼ିବ ।

ଆଲୋକ : ଆଜ୍ଞା ଏଇଠି ରହିଲା ସେ ରଙ୍ଗ ଛଡ଼ା ଶାଢ଼ି/ଆଉ ଶାଢ଼ିକିଣା ମୂଳରସିଦ । ଗୋଟେ ଧୁଆରେ ଏ ଶାଢ଼ିର ଅବସ୍ଥା ଯାହାହେଇଚି, ଯାକୁ ଆଉ କେହି ପିନ୍ଧିବେ ନାହିଁ ।

ବିଚାରପତି ଲୁଗା ଦୋକାନୀ ଛଗନ ଅଗ୍ରୱାଲ୍‌ଙ୍କୁ ସତ୍ୟପାଠ କରାଅ ।

ପେସ୍କାର ଆପଣଙ୍କ ନାଆଁ ।

ଛଗନ : ଛଗନ ଲାଲ୍ ଅଗ୍ରୱାଲ୍ ।

ପେସ୍କାର : କୁହ ଯାହା କହିବି ସତ୍ୟ କହିବି ।

ଛଗନ : ସତ ବିନା ଆଉ କିଛି କହବ ନାଇଁ ।

ବିଚାରପତି : ଆପଣଙ୍କର ଯାହା କହିବାର ଅଛି କୁହନ୍ତୁ ।

ଛଗନ : ଶାଢ଼ିଟାକୁ ନାଇଁ ଧୋଇଥିଲେ ଆମେ ତାକୁ ରଖି ଆଉ ଏକଟି ଶାଢ଼ି ଦେଇଥାନ୍ତା । ଧୋଇଦେବାର ଶାଢ଼ିଟା ଘାଟା ହେଇଗଲା ହଜୁର । ସେଟାକୁ ଆଉ କିଏ ନବ ?

ଆଲୋକ : ଶାଢ଼ିଟାର ତିଆରି ଖରାପ ଆଜ୍ଞା । ଏମିତିଆ ଖରାପ ଶାଢ଼ି କଂପାନୀ ବଜାରକୁ ନଛାଡ଼ିବା କଥା । କାରଣ ଏମିତି କଚାରଙ୍ଗର ଶାଢ଼ି ଯିଏନେବ, ସିଏ ଦିନେନା ଦିନେ ନିଶ୍ଚୟ ଧୋଇବ । ଆଉ ଧୋଇଲେ ତାର ଅବସ୍ଥା ଏଇୟା ହିଁ ହେବ ।

ଛଗନ : ଆମେ ତ ବ୍ୟବସାୟୀ ଆଦମୀ ଅଛି । ଆମେ ତ ଆମ ଦୋକାନେ ଏସବୁ ଶାଢ଼ି ବନଉ ନାଇଁ ।

ଆଲୋକ : ତମକୁ ସେକଥା କିଏ କହିଲା ? ତମେ ଯୋଉ କଂପାନୀରୁ ଶାଢ଼ି କିଣିଚ ସେ କଂପାନୀ ଏ ଶାଢ଼ିର ଦାମ ଦଉ ।

ଛଗନ : କଂପାନୀ ଆଉ ଗୋଟେ ଶାଢ଼ି ଦବକି ନଦବ ଆମେ କି ରକମ କହିବ ? କଂପାନୀ ଶାଢ଼ିର ଦାମ୍‌ଟା ଆଉ ୱାପସ କରିବ କି ନାହିଁ କରିବ ଆମେ କେମିତି କହବ ?

ଆନନ୍ଦ ଚନ୍ଦ୍ର ପତି

ବିଚାରପତି : ଆଚ୍ଛା ଛଗନଲାଲବାବୁ । ଏ ଶାଢ଼ିର ତିଆରି ଦୋଷ ଅଛି ବୋଲି ସ୍ୱୀକାର କରୁଛ କି ନାହିଁ ।

ଛଗନ : ସାର୍ ।

ବିଚାରପତି : ଶାଢ଼ିଟିର ତିଆରି ଖରାପ । ଖାଉଟି ଟଙ୍କା ଦେଇ କିଣିଛି । ସିଏ କାହିଁକି କ୍ଷତି ସହିବ ? ତେଣୁ ଏ ଶାଢ଼ିର ଦାମ ବାବଦକୁ ଏକଶହ ପଚାଶ ଟଙ୍କା, ଏବଂ ମକଦ୍ଦମା ଖର୍ଚ୍ଚ ଓ ଅନ୍ୟାନ୍ୟ କ୍ଷତି ପୂରଣ ବାବଦକୁ ଆଉ ଶହେ ଟଙ୍କା ଏମିତି ସର୍ବମୋଟ ଦୁଇଶହ ପଚାଶ ଟଙ୍କା ଫଗୁ ନାୟକଙ୍କୁ ଦୋକାନୀ ଛଗନଲାଲ ଦେବେ । ପେସ୍କାର ।

ପେସ୍କାର : ସାର୍ ।

ବିଚାରପତି : ଯା ପର ମକଦ୍ଦମା ପେଶ୍‌କର ।

ପେସ୍କାର : ଦ୍ୱିତୀୟ ମକଦ୍ଦମା ଆପର୍ତ୍ତି ସାମଲ ବନାମ ଟି.ଭି ଦୋକାନୀ ଗଗନ ମହାନ୍ତି ।

ବିଚାରପତି : ଆପଣଙ୍କ ନାଆଁ ।

ଅପର୍ତ୍ତି : ଅପର୍ତ୍ତି ସାମଲ ।

ପେସ୍କାର : କୁହନ୍ତୁ ଯାହା କହିବି ସତ୍ୟକହିବି ।

ଅପର୍ତ୍ତି : ଯାହା କହିବି ସତ କହିବି ।

ପେସ୍କାର : ସତ୍ୟ ବିନା ଅନ୍ୟ କିଛି କହିବି ନାହିଁ ।

ଅପର୍ତ୍ତି : ସତ୍ୟ ବିନା ଅନ୍ୟ କିଛି କହିବି ନାହିଁ ।

ବିଚାରପତି : ଆପଣଙ୍କ ଅଭିଯୋଗ ପେଶ୍‌କରନ୍ତୁ ।

ଅପର୍ତ୍ତି : ଆମ ଘର ମଫସଲ ଗାଆଁରେ । ଆଜିକି ଛଅମାସ ହେଲା କଟକର ଗଗନ ମହାନ୍ତିଙ୍କ ଦୋକାନରୁ ପାଞ୍ଚହଜାର ଆଠଶ ଟଙ୍କା ଦେଇ ଗୋଟେ କଳାଧଳା ଟି.ଭି କିଣିଥିଲି । କିଣିବା ଦିନଠୁ ଟିଭିଟା ଏଇ ଛଅ ମାସ ଭିତରେ ଛ'ଥର ଖରାପ ହେଇଚି । ଫିଥର ଚାଳିଶ ପଚାଶ ଟଙ୍କା ଖରଚ କରି ଗାଡ଼ି, ମଟରରେ ନଦି ମୁଁ ଟି.ଭିଟାକୁ ନେଇ ତାଙ୍କ ଦୋକାନରେ ମରାମତି କରେଇଚି । ମୋ ଜାଣିବାରେ ସେ ଟିଭିଟାର ତିଆରି ଦୋଷ ଅଛି । ସେଇଥିପାଇଁ ଥରକୁ ଥର ଖରାପ ହଉଚି । ମୁଁ ତାଙ୍କୁ କହିଲି ଏ ଟିଭିଟାକୁ ଫେରାଇ ନେଇ ଆଉ ଗୋଟେ ଟି.ଭି ଦିଅ, ନହେଲେ ମୋ ପଇସା ଫେରାଇ ଦିଅ । (କାନ୍ଦ କାନ୍ଦ ହୋଇ) ମତେ ଏଇ ଗଗନ ମହାନ୍ତି ଗୁଣ୍ଡା ଲଗେଇ

ବାଡ଼େଇବାକୁ କହିଲା । ମୁଁ ଗରିବ ଲୋକ ହଜୁର । ଆପଣ ମାଆ ବାପ । ଆପଣ ବିଚାର କରନ୍ତୁ ।

ଗଗନ : ମୁଁ ତାଙ୍କୁ କହିଲି ଗ୍ୟାରେଣ୍ଟି ପିରିଅଡ୍ ଅଛି, ଯେତେଥର ଖରାପ ହେବ ସେତେଥର ଆମେ ବିନା ପଇସାରେ ମରାମତି କରିଦେବୁ ।

ଅପର୍ଣ୍ଣି : ତା ବୋଲି ତମେ ମତେ ମାଡ଼ ମାରିବ ?

ଗଗନ : ଏ ସବୁ ନିହାତି ମିଛ କଥା ?

ଅପର୍ଣ୍ଣି : ଏ କଥା ମିଛ କି ସତ ହଜୁର ଆମ ଗାଆଁର ଆଲୋକଙ୍କୁ ପଚାରନ୍ତୁ, ସିଏ ଦେଖିଛି ।

ଆଲୋକ : ହଁ, ଆଜ୍ଞା ସେଦିନ ମୁଁ ଆଉ ଅପର୍ଣ୍ଣି ଭାଇ ସାଙ୍ଗ ହୋଇ କଟକ ଯାଇଥିଲୁ । ସିଏ ଟି.ଭି ସଜାଡ଼ିବାକୁ ଟି.ଭି ଦୋକାନକୁ ଗଲେ, ମୁଁ ପାଖ ଦୋକାନରୁ ମନୋହରି ସଉଦା କିଣୁଥିଲି । ପାଟି ଶୁଭିଲାରୁ ମୁଁ ଦଉଡ଼ିକି ଯାଇ ଦେଖିଲି ଏ ଟି.ଭି ଦୋକାନୀ ଅପର୍ଣ୍ଣି ଭାଇଙ୍କି ବାଡ଼େଇବା ପାଇଁ ତାଙ୍କ ଲୋକଙ୍କୁ କହୁଚନ୍ତି । ମୁଁ ଯାଇ ବନ୍ଦ୍ କଲି ।

ବିଚାରପତି : ଏକଥା କ'ଣ ସତ ଗଗନବାବୁ ?

ଗଗନ : ଏ ଲୋକ ଆଗେ ମୋ ଦୋକାନରେ ଗୁଣ୍ଡାମି ବାହାର କଲା । କହିଲା- ଆଉ ଗୋଟେ ଟିଭି ଦିଅ, ନଚେତ ଟିରିଦାମ୍ ଫେରାଇ ଦିଅ । ନହେଲେ ମୁଁ ଏଇଠି ବସିବି ।

ଆଲୋକ : ଗ୍ୟାରେଣ୍ଟି ପିରିଅଡ଼ ସରିଗଲେ ଟି.ଭି ଯଦି ଖରାପ ହେବ କିଏ ସଜାଡ଼ିବ ? ତମେ କ'ଣ ଆଉ ବିନା ପଇସାରେ ସଜାଡ଼ିବ ?

ଗଗନ : ତା କେମିତି ହବ ?

ବିଚାରପତି : ଅପର୍ଣ୍ଣି ସାମଲ ଟଙ୍କା ଦେଇ ଟି.ଭିଟି କିଣିଥିବାରୁ ସିଏ ଜଣେ ଖାଉଟି । ଜଣେ ଖାଉଟି ହିସାବରେ ସିଏ କିଣିଥିବା ଟି.ଭିର ଭଲ, ମନ୍ଦ ବିଷୟରେ ଆପତ୍ତି ଅଭିଯୋଗ କରିବାର ଅଧିକାର ତାଙ୍କର ଅଛି । ସେ ଆପତ୍ତି ଅଭିଯୋଗ କଲେ ବୋଲି ଲୋକ ଲଗାଇ ତାଙ୍କୁ ପିଟିବାକୁ ପ୍ରସ୍ତୁତ ହେବା ଗଗନ ବାବୁଙ୍କ ପକ୍ଷେ ବେଆଇନ କାମ । ଚୁକ୍ତି ଅନୁସାରେ ସିଏ କେବଳ ଗାରେଣ୍ଟି ପିରିଅଡ଼ ଭିତରେ ବିନା ପଇସାରେ ମରାମତି କରି ଦେଇପାରିବେ । ବାରମ୍ବାର ଖରାପ ହେଉଥିବାରୁ ଜଣାପଡୁଛି ଟି.ଭିର ତିଆରିରେ କିଛି ତ୍ରୁଟି ଅଛି । ତେଣୁ ଟି.ଭି ଦୋକାନୀ ଏ ଟି.ଭିଟି ଫେରାଇ ନେଇ ସେଇ ମୂଲ୍ୟର

ଅନ୍ୟ ଗୋଟିଏ ଟି.ଭି ଯୋଗାଇ ଦେବେ କିମ୍ବା ଟି.ଭିର ଦାମ ଖାଉଟି ଆପଇଁ ସାମଲଙ୍କୁ ଫେରସ୍ତ କରିବେ । ତା ସହିତ ମକଦ୍ଦମା ଖର୍ଚ୍ଚ ଓ କ୍ଷତି ପୂରଣ ବାବଦକୁ ଚାରିଶହ ଟଙ୍କା ଦେବେ । ଯା ପରବର୍ତ୍ତି ମକଦ୍ଦମା ପେଶ୍‌କର ।

ପେସ୍କାର : ତୃତୀୟ ମକଦ୍ଦମା ଜଗନ୍ନାଥ ମହାଳିକ ବନାମ କଣ୍ଟ୍ରୋଲ ଡ଼ିଲର ନଟବର ସାହୁ ।

ବିଚାରପତି : ଆପଣଙ୍କ ନାଆଁ ?

ଜଗୁଆ : ଜଗନ୍ନାଥ ମହାଳିକ ।

ପେସ୍କାର : କୁହନ୍ତୁ- ଯାହା କହିବି ସତ କହିବି ।

ଜଗୁଆ : ଯାହା କହିବି ସତ କହିବି ।

ପେସ୍କାର : ସତ୍ୟ ବିନା ଅନ୍ୟ କିଛି କହିବି ନାହିଁ ।

ଜଗୁଆ : ସତ ବିନା ଅନ୍ୟ କିଛି କହିବି ନାହିଁ ।

ବିଚାରପତି : ଆପଣଙ୍କ ଅଭିଯୋଗ ପେଶ୍ କରନ୍ତୁ ।

ଜଗୁଆ : ନଟବର ସାହୁ ଆମ ଗାଆଁର କଣ୍ଟ୍ରୋଲ ଡ଼ିଲର । ସେ ଚିନି, ଗହମ, ଚାଉଳ, କିରାସିନ୍, ପାମୋଲିନ୍ କଳା ବଜାର କରୁଛି । ଆମକୁ ମାସକୁ ଘରପିଛା ଚିନି ଅଢ଼େଇଶ, ଗହମ କେଜିଏ କିରାସିନି ଦୁଇଶ ଦେଇ ଭଣ୍ଡଉଚି । ଦୋକାନ ଖୋଲିବାରେ ଠିକ୍ ଠିକଣା ନାହିଁ । ବଟକରା ବଦଳରେ ପଥରରେ ଜିନିଷ ଓଜନ କରୁଛି ।

ନଟ : ମୁଁ ସରକାରରୁ ଯାହା ପାଉଛି ସେତିକି ଲୋକମାନଙ୍କୁ ଦେଉଛି । ଆଜିକାଲି ଦେଶର ଲୋକସଂଖ୍ୟା ପୋକମାଛି ପରି ବଢ଼ି ଚାଲିଛି । ଏତେ ଲୋକଙ୍କ ପାଇଁ ଚିନି, ଗହମ, ଚାଉଳ, କିରାସିନି, ପାମୋଲିନ୍ ସରକାର ଯୋଗାଇ ପାରୁନାହିଁ । ମୁଁ ଯାଙ୍କୁ କୋଉଠୁ ଆଣିକି ଦେବି ? ଆଉ ପଥରରେ ଜିନିଷ ଓଜନ କରିବା କଥା ନିହାତି ମିଛ । ମୋ ପାଖରେ ସବୁ ପ୍ରକାର ବଟକରା ଅଛି ।

ଶରତ୍ : ମୁଁ ଆଞ୍ଚଳ ବ୍ଲକ ଅଫିସ୍‌ରୁ ବୁଝିଛି, ସବୁ ଜିନିଷ ଯଥେଷ୍ଟ ପରିମାଣ ଆମ ଗାଆଁର ଡ଼ିଲର ନଟବର ସାହୁଙ୍କୁ ଯୋଗାଇ ଦିଆଯାଇଛି । କିନ୍ତୁ ସିଏ ଲୋକମାନଙ୍କୁ ନଦେଇ ମିଛ ଖାତା କରି ଲୋକମାନଙ୍କ ଜାଲ୍ ଦସ୍ତକତ କରି ସରକାରଙ୍କୁ ହିସାବ ବୁଝଉଛନ୍ତି । ବହୁ ଜିନିଷ କଳାବଜାରରେ ଚଢ଼ାଦରରେ ବିକ୍ରି କରି ଅଳ୍ପଦିନରେ ବହୁତ ଟଙ୍କା

ଠୁଳ କଲେଣି । ପଥରରେ ଜିନିଷ ଓଜନକରି ଲୋକଙ୍କୁ ଠକୁଚନ୍ତି । ଆମ ଗାଆଁର ଆହୁରି ଦଶଜଣ ଲୋକ ଏ ଡ଼ିଲରର ମନମୁଖୀ ଆଉ ଅସାଧୁ କାରବାର ବିରୁଦ୍ଧରେ ସାକ୍ଷୀଦେବାକୁ ଆସିଚନ୍ତି । ଆପଣ ଅନୁମତି ଦେଲେ ମୁଁ ସେମାନଙ୍କୁ ହାଜର କରାଇବି ।

ବିଚାରପତି : ସେମାନେ ସମସ୍ତେ ଦରଖାସ୍ତରେ ଦସ୍ତକତ କରିଛନ୍ତି ?

ଶରତ : କରିଛନ୍ତି ଆଜ୍ଞା ।

ବିଚାରପତି : ଆପଣ ଯାହା କହିଲେ ସେମାନେ ସେଇଆ କହିବେ ନା ଆଉ ନୂଆ କିଛି କହିବେ ?

ଶରତ : ମୁଁ ଯାହା କହିଲି ସେଇଆ କହିବେ ।

ବିଚାରପତି : ଥାଉ, ସେମାନଙ୍କୁ ହାଜର କରାଇବା ଦରକାର ନାହିଁ ।

ନଟ : କଣ୍ଟ୍ରୋଲ୍ ଜିନିଷ କଥାବୁଝିବା ଖାଉଟି ଅଦାଲତର ସୀମା ବାହାରର କଥା । ମୁଁ ବ୍ଲକ ଅଫିସ୍‌ରୁ ଜିନିଷ ଆଣୁଚି । ମୁଁ ତାଙ୍କୁ ତାର ହିସାବ ଦେବି । ଖାଉଟି ଅଦାଲତର ଏଥିରେ କିଛି କହିବାର ନାହିଁ ।

ବିଚାରପତି : ଖାଉଟି ମାନଙ୍କ ସ୍ୱାର୍ଥର ସୁରକ୍ଷା କରିବା ଖାଉଟି ଅଦାଲତର କାମ । ସରକାର ଆପଣଙ୍କୁ ଯେତିକି ଜିନିଷ ଦେଉଛନ୍ତି ତାହା ଆପଣ ପାଇବାମାତ୍ରେ ଦୋକାନ ଆଗରେ ଗୋଟିଏ କଳାପଟାରେ ସୂଚିତ କରିବା ଉଚିତ । ଥରକୁ ଥର କେତେ ଜିନିଷ ପାଇଲେ, କେତେ ଜିନିଷ ବିକ୍ରି ହେଲା ଆଉ କେତେ ଜିନିଷ ଗଚ୍ଛିତ ରହିଲା, ତାର ଦର କ'ଣ ଇତ୍ୟାଦି ସବୁଲୋକ ଜାଣି☐ ପାରିବା ପରି ଗୋଟିଏ ସ୍ପଷ୍ଟ ଚିତ୍ର ସେହି ବୋର୍ଡ଼ରେ ସ୍ଥାନ ପାଇବା କଥା । କିନ୍ତୁ ଆପଣ ତାହା କରି ନାହାଁନ୍ତି । ଏଣିକି ଆପଣ ସେପରି କରିବାକୁ ସତର୍କ କରାଇ ଦିଆଗଲା । ୱେଟ୍‌ସ୍ ମେଜର ସଂସ୍ଥାଦ୍ୱାରା ଯାଞ୍ଚ କରାଯାଇଥିବା ବଟକରା ଓ ତରାଜୁ ଏଣିକି ଆପଣ ବ୍ୟବହାର କରିବେ । ଗତ ଚାରିମାସର ଜିନିଷ ଠିକ୍ ରୂପେ ଆପଣ ବଣ୍ଟନ କରିଛନ୍ତି କି ନାହିଁ ତାହା ଆପଣଙ୍କ ବ୍ଲକ ଅଫିସର ତନଖି କରିବେ । ଏ ସବୁ ବ୍ୟବସ୍ଥା ନହେବା ପର୍ଯ୍ୟନ୍ତ ବ୍ଲକ୍ ଅଫିସ୍ ଆପଣଙ୍କୁ ଆଉ ଜିନିଷ ଯୋଗାଇବେ ନାହିଁ । ପରବର୍ତ୍ତି ମକଦ୍ଦମା ପେଶ୍ କର ।

ପେସ୍କାର : ଚତୁର୍ଥ ମକଦ୍ଦମା ଅନାଦି ସାହୁ ବନାମ ଓଡ଼ିଶା ଗ୍ରୀଡ଼ ନିଗମ ।

ଅନାଦି : ମୁଁ ଅନାଦି ସାହୁ ।

ଆନନ୍ଦ ଚନ୍ଦ୍ର ପହି

ପେସ୍କାର : କୁହନ୍ତୁ ଯାହାକହିବି କେବଳ ସତ୍ୟ କହିବି ।

ଅନାଦି : ଯାହା କହିବି କେବଳ ସତ୍ୟ କହିବି ।

ପେସ୍କାର : ସତ୍ୟ ବିନା ଅନ୍ୟ କିଛି କହିବି ନାହିଁ ।

ଅନାଦି : ସତ ବିନା ଅନ୍ୟ କିଛି କହିବି ନାହିଁ ।

ବିଚାରପତି : ଆପଣଙ୍କ ଅଭିଯୋଗ ?

ଅନାଦି : ନିୟମ ଅନୁସାରେ ଫର୍ମ ଆଉ ଟଙ୍କା ଦାଖଲ କରି ମୁଁ ମୋ ଘରକୁ ବିଜୁଳି ଆଲୁଅ ଆଣିଚି । ମୋ ଘରକୁ ମାସକୁ ମାସ ନିୟମିତ ବିଲ୍ ଆସୁଚି କିନ୍ତୁ ବିଜୁଳି ଆସିବାର ଠିକ୍ ଠିକଣା ନାହିଁ । କୋଉ ମାସରେ ୧୫ ଦିନ ବିଜୁଳି ନାହିଁ, ଆଉ କେଉଁ ମାସରେ ୨୦ ଦିନ ବି ଆଲୁଅ ଜଳୁ ନାହିଁ । ମାସରେ ଯୋଉ କେତେଦିନ ବିଜୁଳି ରହୁଚି ସିଏ ବି ଭାରି ଅନିୟମିତ । ସକାଳେ ଥିଲେ ରାତିରେ ନାହିଁ, ଖରା ବେଳେ ଥିଲେ ସଂଜ ବେଳେ ନାହିଁ । ଘରେ ଯେତିକି ସମୟ ଆଲୁଅ ରହୁଚି ପ୍ରାୟ ମିଞ୍ଜି ମିଞ୍ଜି ହଉଚି । ସେ ଆଲୁଅରେ କିଛି କରି ହଉ ନେଇଁ । ମୋ ମିଟରେ ଠିକ୍ ଅଛି । ସେଥିରେ ଯେତିକି ରିଡ଼ିଙ୍ଗ୍ ଉଠୁଛି ତାଠୁ ଢ଼େର ଅଧିକ ଟଙ୍କାର ବିଲ୍ ପ୍ରତିମାସରେ ଆସୁଛି । ମୁଁ ଯେତିକି ବିଜୁଳି ପାଇଲି ସେତିକିର ସିନା ପଇସା ଦେବି, ତାଠୁ ଅଧିକ କାଇଁକି ଦେବି ?

ବିଚାରପତି : ଆପଣ ଗ୍ରୀଡ୍‌କୋ ତରଫରୁ ଆସିଛନ୍ତି । ଆପଣ କ'ଣ ଭାବରେ କାମ କରନ୍ତି ?

ମ୍ୟାନେଜର : ମ୍ୟାନେଜର ।

ବିଚାରପତି : ଅନାଦି ବାବୁ ଯାହା କହିଲେ ଆପଣ ତାର ଉତ୍ତର ଦିଅନ୍ତୁ ।

ମ୍ୟାନେଜର : ସାର୍ ! ପ୍ରତ୍ୟେକ ଘରର ବିଦ୍ୟୁତ୍ ସୁଇଚ୍, ପ୍ଲଗ ଇତ୍ୟାଦିକୁ ହିସାବକୁ ନେଇ ପ୍ରତିଘର ପାଇଁ ସର୍ବନିମ୍ନ ବିଦ୍ୟୁତ୍ ମାସୁଲ ଆମେ ସ୍ଥିର କରିଛୁ । ତେଣୁ କେହି ବିଦ୍ୟୁତ ଜାଳନ୍ତୁ ନ ଜାଳନ୍ତୁ ଘରକୁ ବିଦ୍ୟୁତ ଲାଇନ୍ ନେଇଥିବା ଲୋକମାନେ ମାସିକ ସର୍ବନିମ୍ନ ବିଲ୍‌ର ପଇସା ଦେବାକୁ ପଡ଼ିବ ।

ଅନାଦି : ଇଏ କୋଉ ଆଡ଼ର କଥା ? ଆପଣ ସିନା ମାସକ ଯାକ ବିଜୁଳି ଯୋଗାଇ ଦେଲେ ଆପଣ ସ୍ଥିର କରିଥିବା ମାସିକ ସର୍ବନିମ୍ନ ବିଲ୍ ଲାଗୁହେବ ? ମାସରେ ମୋଟେ ୧୦ ଦିନ କିମ୍ବା ୧୫ ଦିନ ବିଜୁଳି

ଯୋଗାଇ ମାସକର ବିଲ୍ କେମିତି ନେବେ ?

ମ୍ୟାନେଜର : ଆମେ ଆପଣଙ୍କୁ ସବୁଦିନ ଯଥେଷ୍ଟ ବିଜୁଳି ଯୋଗାଇବା ପାଇଁ ସମସ୍ତ ବ୍ୟବସ୍ଥା କରିଛୁ । କିନ୍ତୁ ଆମ ଅକ୍ତିଆର ବାହାର ଅସୁବିଧା ଯୋଗେ ଅନେକ ସମୟରେ ତାହା ସମ୍ଭବ ହେଉନାହିଁ । ତାର ଚୋରୀ, ହୁକ୍ ପକାଇ ଅସାଧୁ ଲୋକଙ୍କ ବେନିୟମ ବିଦ୍ୟୁତ ବ୍ୟବହାର ଏମିତି ଅନେକ କାରଣ ଯୋଗୁ ନିୟମିତ ବିଦ୍ୟୁତ୍ ସେବାରେ ବ୍ୟାଘାତ ଘଟୁଛି । ସେ ସବୁ ସୁଧାରିବାକୁ ଆମେ ଆପ୍ରାଣ ଚେଷ୍ଟା କରିବୁ ।

ଅନାଦି : ଏ ସବୁ ଅସାଧୁକାରବାର ରୋକିବା ଗ୍ରୀଡ୍‌କୋର କାମ । ଆମକୁ ସେ କଥା କହି କାନ୍ଧରୁ ଦାୟିତ୍ୱ ଖସେଇ ଦେବା ଠିକ୍ ନୁହଁ । ତାଙ୍କ ପାଇଁ ଆମେ କାହିଁକି କ୍ଷତି ସହିବୁ ?

ବିଚାରପତି : ଆଚ୍ଛା ମ୍ୟାନେଜର ବାବୁ ! ମୋର ଗୋଟିଏ ପ୍ରଶ୍ନର ଉତ୍ତର ଦିଅନ୍ତୁ ।

ମ୍ୟାନେଜର : ପଚାରନ୍ତୁ ସାର୍ ।

ବିଚାରପତି : ଅନାଦି ସାହୁଙ୍କ ମିଟର ଠିକ୍ ଅଛି, ଏକଥା ଆପଣ ସ୍ୱୀକାର କରୁଛନ୍ତି ତ ?

ମ୍ୟାନେଜର : ହଁ, ମୁଁ ଲୋକପଠେଇ ପରୀକ୍ଷା କରାଇଛି, ତାଙ୍କ ମିଟର ଠିକ୍ ଅଛି ।

ବିଚାରପତି : ଉଭୟ ପକ୍ଷଙ୍କ ବୟାନ ଶୁଣିବା ପରେ ମୋର ହୃଦ୍‌ବୋଧ ହେଲା, ଅନାଦି ସାହୁ ଯେତିକି ବିଜୁଳି ବ୍ୟବହାର କରୁଛନ୍ତି ତାଠୁ ଅଧିକ ଦାମ୍ ଦେବାକୁ ତାଙ୍କୁ ବାଧ କରାଯିବା ଆଇନ୍ ସମ୍ମତ ନୁହଁ । ତାଙ୍କ ଘରେ ବସିଥିବା ମିଟରଟି ଠିକ୍ ଥିବାରୁ ସେଇମିଟରର ରିଡ଼ିଙ୍ଗ ପ୍ରତିମାସରେ ଯାହା ଆସୁଛି ସେ ପ୍ରତିମାସରେ କେବଳ ସେତିକି ଟଙ୍କା ହିଁ ବିଜୁଳି ବ୍ୟବହାର ପାଇଁ ଦେବେ । ତାଙ୍କର ପିଛିଲା ସମସ୍ତ ବିଲ୍ ସଂପୃକ୍ତ ମାସର ରିଡ଼ିଙ୍ଗ୍ ଅନୁସାରେ ଓଡ଼ିଶା ଗ୍ରୀଡ୍ ନିଗମ ସଂଶୋଧନ କରିବେ । ସଂଶୋଧିତ ବିଲ୍ ପାଇବାର ଏକମାସ ଭିତରେ ଅନାଦିସାହୁ ଓଡ଼ିଶା ଗ୍ରୀଡ଼ ନିଗମରେ ବିଲ୍‌ଟଙ୍କା ଦାଖଲ କରିବେ । ଆଜି ବିଚାର ପାଇଁ ଆଉକିଛି ମକଦ୍ଦମା ଅଛି ।

ପେସ୍କାର : ଆଉ ଗୋଟେ ଅଛି ସାର୍ ।

ବିଚାରପତି : ପେଶ୍ କର ।

ପେସ୍କାର : ପଞ୍ଚମ ମକଦ୍ଦମା ଫକୀର ସାହୁ ବନାମ ସନାତନ ରାଉତ ।

ଆନନ୍ଦ ଚନ୍ଦ୍ର ପହି

ସନିଆ : ମୁଁ ସନାତନ ରାଉତ ।
ପେସ୍କାର : କୁହନ୍ତୁ, ଯାହା କହିବି ସତ, କହିବି ।
ସନିଆ : ଯାହା କହିବି ସତ କହିବି ।
ପେସ୍କାର : ସତ୍ୟ ବିନା ଅନ୍ୟ କିଛି କହିବି ନାହିଁ ।
ସନିଆ : ସତ ବିନା ଅନ୍ୟ କିଛି କହିବି ନାହିଁ ।
ବିଚାରପତି : ଆପଣଙ୍କ ଅଭିଯୋଗ ।
ସନିଆ : ଆମ ଗାଆଁର ତେଜରାତି ଦୋକାନୀ ଫକୀରକୁ କୋଡ଼ିଏ ଟଙ୍କା ଦେଇ ଗୋଟିଏ ହଳଦୀ ପାକିଟି କିଣିଥିଲି ହଜୁର । ଘରେ ଆଣି ଦେଖିଲି ସେଥିରେ କରତ ଗୁଣ୍ଡ ଓ ଚାଉଳଗୁଣ୍ଡ ମିଶାଯାଇଛି । ଯୋଉ ତରକାରୀରେ ଆଉ ଡ଼ାଲିରେ ସେ ହଳଦୀ ଗୁଣ୍ଡ ପକେଇଲି ସେ ସବୁ ପାଚିରେ ଦେଇହେଲା ନେଇଁ । ମୁଁ ଆଜ୍ଞା ହକ ପଇସା ଦେଇ ଜିନିଷ କିଣିଚି, ଏମିତି ଭେଜାଲ୍ ଜିନିଷ ମୋର ଦରକାର ନାହିଁ, ତା ଛଡ଼ା, ଏ ଭେଜାଲ ଜିନିଷ ଖାଇକି ଆମକୁ ବାର ରୋଗ ବଇରାଗ ହଉଚି, ତାର କ୍ଷତିପୂରଣ କିଏ ଦବ ?
ବିଚାରପତି : ପେସ୍କାର ।
ପେସ୍କାର : ସାର୍ ।
ବିଚାରପତି : ତେଜରାତି ଦୋକାନୀ ଫକୀର ସାହୁକୁ ହାଜର କରାଅ ।
ଫକୀର : ମୁଁ ଆଜ୍ଞା ଫକୀର ସାହୁ ।
ପେସ୍କାର : କୁହନ୍ତୁ ଯାହା କହିବି ସତ କହିବି, ସତ ବିନା ଅନ୍ୟ କିଛି କହିବି ନାହିଁ ।
ଫକୀର : ଯାହା କହିବି ସତ କହିବି, ସତ ବିନା ମିଛ କହିବି ନେଇଁ ।
ବିଚାରପତି : ସନାତନ ରାଉତ ଯାହା କହିଲେ ସେ ବିଷୟରେ ତୁମର କ'ଣ କହିବାର ଅଛି ।
ଫକୀର : ନାଇଁ, ହଜୁର । ଏ ସବୁ ମିଛ କଥା । ମୋ ଦୋକାନ ହଳଦୀ ଭେଜାଲ ନୁହଁ, ଖୁବ୍ ଭଲ । କରତଗୁଣ୍ଡ ଓ ଚାଉଳ ଗୁଣ୍ଡ ମିଶା ହଳଦୀ ଗୁଣ୍ଡ ମୋ ଦୋକାନରେ ନାହିଁ କି ମୁଁ ସନିଆକୁ ସେମିତିଆ ଭେଜାଲ ହଳଦୀ ଗୁଣ୍ଡ ବିକିନେଇଁ ।
ବିଚାରପତି : ସେ ହଳଦୀ ଗୁଣ୍ଡ ପରୀକ୍ଷାଗାରରେ ପରୀକ୍ଷା କରାଯାଇଛି ଆଉ ସେଥିରେ କରତ ଗୁଣ୍ଡ ଓ ଚାଉଳଗୁଣ୍ଡ ମିଶା ଯାଇଥିବାର ପ୍ରମାଣ

ମିଳିଛି । ତାଛଡ଼ା ପ୍ୟାକେଟ୍‌ରେ ଅଢ଼େଇଶ ଓଜନର ଜିନିଷ ନାହିଁ । ଦୁଇଶ ପଚିଶ ଗ୍ରାମର ଅଛି ।

ଫକୀର : ସେଟା ମୋ ଦୋକାନ ହଳଦୀ ବୋଲି କିଛି ପ୍ରମାଣ ନାହିଁ ହଜୁର । ମୋର କିଛି ରସିଦ ସିଏ ଦେଖାଇ ପାରିବ ନାହିଁ ।

ବିଚାରପତି : ସେ କଥା ବି ତୁମେ ଫାକି ପାରିବ ନାହିଁ । ସନାତନ ତୁମ ଦୋକାନରୁ ଭେଜାଲ ହଳଦୀ ପ୍ୟାକେଟ୍ କିଣିବା ବେଳେ ତୁମ ଗାଁର ଶରତ ଓ ଆଲୋକ ବୁଝେଁ ଉପସ୍ଥିତ ଥିଲେ । ସେମାନେ ସାକ୍ଷୀ ପଡ଼ିଛନ୍ତି ।

ସନିଆ : ହଜୁର କହିବେ ଯଦି ଶରତ ଆଉ ଆଲୋକ ଏଇଠି ଅଛନ୍ତି, ଆପଣଙ୍କ ଆଗରେ ସାକ୍ଷୀଦେବେ ।

ଫକୀରା : ଏ ସବୁ ମିଶି ମୋ ବିରୁଦ୍ଧରେ ଗୋଟେ ଷଡ଼ଯନ୍ତ୍ରକରିଛନ୍ତି ।

ସନିଆ : ଖାଲି ମୁଁ ନୁହଁ ଆଜ୍ଞା, ଆମ ଗାଁର ସବୁଲୋକଙ୍କୁ ଏ ଫକୀର ଭେଜାଲ ଜିନିଷ ଦେଇ ଠକୁଛି । ଯଦି କହିବେ ଫଗୁଆ, ମରୁଆ, ଅପର୍ତ୍ତି ସମସ୍ତେ ଆସି ସାକ୍ଷୀ ଦେବେ ।

ବିଚାରପତି ନା, ଆଉ ଅଧିକ ସାକ୍ଷୀର ଆବଶ୍ୟକ ନାହିଁ । ମୁଁ ଉଭୟ ପକ୍ଷଙ୍କ ବୟାନ ଶୁଣିବା ପରେ ମୋର ହୃଦ୍‌ବୋଧ ହୋଇଛି - ଫକୀର ସାହୁ ହଳଦୀ ଗୁଣ୍ଡରେ କରଟଗୁଣ୍ଡ ମିଶାଇ ଖାଉଟି ମାନଙ୍କର ବହୁତ୍ କ୍ଷତି କରୁଛନ୍ତି । ତାଙ୍କଠାରୁ ଜୋରିମନା ସ୍ୱରୂପ ଆଉ ଦୁଇ ପ୍ୟାକେଟ୍ ହଳଦୀ ଗୁଣ୍ଡର ଦାମ୍ ୪୦ ଟଙ୍କା ଏବଂ କ୍ଷତି ପୂରଣ ବାବଦକୁ ୫୦୦ଟଙ୍କା ଏମିତି ୫୪୦ ଟଙ୍କା ଆଦାୟ କରାଯାଇ ସନାତନଙ୍କୁ ଦିଆଯିବ । ଫକୀର ସାହୁଙ୍କୁ ଏଣିକି ସାବଧାନ କରାଇ ଦିଆଯାଉଛି ପ୍ରତ୍ୟେକ ଜିନିଷ ବିଶୁଦ୍ଧ ରଖିବେ, ଆଉ ଭେଜାଲ୍ କରିବେ ନାହିଁ । ପ୍ରତି ପ୍ୟାକେଟ୍ ଉପରେ ଆଇ.ଏସ୍.ଆଇ ମୋହର ମାରିବେ ଓ ପ୍ୟାକେଟ୍ ତିଆରି ହୋଇଥିବା ତାରିଖ, ପ୍ୟାକେଟ୍‌ର ମୂଲ୍ୟ ଇତ୍ୟାଦି ସ୍ପଷ୍ଟ ଭାବେ ଉଲ୍ଲେଖ କରିବେ । ଆଜି ବିଚାର ଏଇଠି ଶେଷ ହେଲା ।



ଆନନ୍ଦ ଚନ୍ଦ୍ର ପହି

# ଶେଷଦୃଶ୍ୟ

(ଗାଆଁ କ୍ଲବ । ଗାଆଁର ସବୁଲୋକ ଏକାଠି ହୋଇଛନ୍ତି । ଖାଉଟି ସୁରକ୍ଷା ଅଦାଲତରେ ଜିତିଲା ପରେ ଗାଆଁ ଲୋକମାନଙ୍କ ମଧ୍ୟରେ ଅପୂର୍ବ ଜାଗରଣ ଦେଖାଦେଇଛି ।)

ଆଲୋକ : ଭାଇ ଓ ଭଉଣୀମାନେ ! ଆଜି ଆମମାନଙ୍କ ପାଇଁ ସବୁଠୁ ଖୁସିର ଦିନ । ଆମେ ଆଜି ସଚେତନ ହୋଇଛେ । ଆମର ନିଜ ଅଧିକାର ଆମେ ଅଦାଲତରେ ସାବ୍ୟସ୍ତ କରିପାରିଛେ । ଆମ ଗାଆଁର ପାଞ୍ଚଟି ଖାଉଟି ମକଦ୍ଦମାରେ ଆମେ ଜୟଯୁକ୍ତ ହୋଇଛେ । ଇଏ ଆମ ଗାଆଁର ପାଞ୍ଚଜଣ ଲୋକଙ୍କର ନୁହଁ । ଏବିଜୟ ସମଗ୍ର ଖାଉଟି ସମାଜର ।

(ଉପସ୍ଥିତ ଲୋକମାନେ ଯୋର୍‌ଦାର ତାଳିମାରିଲେ ।)

ଆଲୋକ : ଆଜି ଆମ ଗାଆଁରେ ଏକ ଖାଉଟି ଆନ୍ଦୋଳନ ମୁଣ୍ଡ ଟେକିବାକୁ ଯାଉଛି । ଆପଣମାନେ ଜାଣନ୍ତି ଏ ଆନ୍ଦୋଳନର ଶୁଭ କିଏ ଦେଇଛନ୍ତି ?

(ଲୋକମାନଙ୍କ ମଧ୍ୟରେ ଫୁସ୍‌ଫାସ୍ ଶୁଣାଗଲା- କିଏ ସେ ଶୁଭ ଦେଇଛି ? କିଏ ଶୁଭ ଦେଇଛି ?)

ଆଲୋକ : ଆପଣମାନେ ଜାଣି ନାହାନ୍ତି ?

(ସମସ୍ତେ କହିଲେ-ନା, ନା । ଆମେ ଜାଣିନଉଁ । ସେ ଲୋକ କିଏ ?)

ଆଲୋକ : ଠିକ୍ ଅଛି । ମୁଁ କହୁଛି ଶୁଣନ୍ତୁ । ସିଏ ଆଉ କେହି ନୁହଁ, ଆମ ଗାଆଁର ମରୁଆ ଭାଉଜ । ଫଗୁଆ ଭାଇଙ୍କ ସ୍ତ୍ରୀ ।

(ସଭା ନୀରବ ହୋଇଗଲା ।)

ଆନଂଦ ଚଂଦ୍ର ପଢି

ଆଲୋକ : ପ୍ରତିଦିନ ଆମେ ଘରକୁ କିଛି ନା କିଛି ଜିନିଷ କିଣୁଛୁ । ସେଥିରୁ କିଛିନା କିଛି ଜିନିଷର ମାନ ଠିକ୍ ନାହିଁ, ପରିମାଣ ଠିକ୍ ନାହିଁ କି ଗୁଣ ଠିକ୍ ନାହିଁ । କିନ୍ତୁ ଆମେ ସେ ସବୁର ବିରୁଦ୍ଧରେ ଅଭିଯୋଗ ନ କରି ନୀରବରେ ସହିଯାଉଛୁ । କିନ୍ତୁ ଆମେ ଖାଉଟି । ହକ୍ ପଇସା ଦେଇ ଖରାପ ଜିନିଷ ନବା କାହିଁକି ? ଏ ଦିଗରେ ଆମ ଗାଆଁରେ ପ୍ରଥମ ପଦକ୍ଷେପ ନେଇଚନ୍ତି ମରୁଆ ଭାଉଜ । ଫଗୁଆ ଭାଇ କଟକରୁ ଦେଢ଼ଶ ଟଙ୍କା ଦେଇ ଗୋଟିଏ ଶାଢ଼ି ମରୁଆ ଭାଉଜ ପାଇଁ କିଣିଥିଲେ । ସେ ଲୁଗାଟାର ରଙ୍ଗ ଛାଡ଼ିଗଲା । ମରୁଆ ଭାଉଜ ତାର ଦୃଢ଼ ପ୍ରତିବାଦ କଲେ । ଆଉ ସେଇ ପ୍ରତିବାଦରୁ ଜନ୍ମ ନେଲା ଆମ ଗାଆଁର ପ୍ରଥମ ଖାଉଟି ଅଦାଲତ ମକଦ୍ଦମା ।

(ଉପସ୍ଥିତ ଲୋକମାନେ ପାଟି କଲେ- ମରୁଆ ଦେବୀ ଜିନ୍ଦାବାଦ । ମରୁଆ ଦେବୀ ଜିନ୍ଦା ବାଦ । ଖାଉଟି ଆନ୍ଦୋଳନ ଜିନ୍ଦାବାଦ ।)

ଆଲୋକ · ମୁଁ ବର୍ତ୍ତମାନ ଅନୁରୋଧ କରୁଛି, ମରୁଆ ଭାଉଜ ଆପଣମାନଙ୍କୁ ତାଙ୍କ ଅନୁଭୂତି ବିଷୟରେ କିଛି କହିବେ ।

(ଲୋକମାନେ ପାଟି କଲେ ହଁ ହଁ ମରୁଆଦେବୀ କିଛି କୁହନ୍ତୁ ।)

ମରୁଆ : ମୁଁ ଜଣେ ମୂର୍ଖ ଗାଉଁଲୀ ସ୍ତ୍ରୀଲୋକ । ଘର କାମ ଛଡ଼ା ଆଉ କିଛି ଜାଣିନେଇଁ । ଆପଣମାନଙ୍କୁ ମୁଁ କ'ଣ କହିବି ମୁଁ କିଛି ଭାବିପାରୁ ନାହିଁ । କେବଳ ଏତିକି କହିବି ଆମେ ହକ ପଇସା ଦେଇ ଯାହା କିଣୁଚେ ତାକୁ ଭଲ ଭାବେ ପରଖ କରିନବା । ଯଦି ଖରାପ ପଡ଼େ ତାହେଲେ ଚୁପ୍‌ଚାପ୍ ସହିନଯାଇ.... ତାର ପ୍ରତିବାଦ କରିବା ।

ଆଲୋକ : ମରୁଆ ଭାଉଜ ଯାହା କହିଲେ ଆପଣମାନେ ସମସ୍ତେ ଶୁଣିଲେ । ସେ ଆମ ସମସ୍ତଙ୍କର ଆଦର୍ଶ । ମୁଁ ତାଙ୍କ ସହ ଆଲୋଚନା କରିଚି । ସିଏ ରାଜି ହୋଇଚନ୍ତି ଆମ ଅଞ୍ଚଳରେ ନାରୀମାନଙ୍କୁ ନେଇ ଗୋଟିଏ ମହିଳା ଖାଉଟି ସଂଘ ଗଢ଼ିବେ । ମୁଁ ତାଙ୍କୁ ଅନୁରୋଧ କରୁଛି, ସିଏ ଆପଣମାନଙ୍କ ଆଗରେ ପ୍ରତିଶ୍ରୁତି ଦିଅନ୍ତୁ ।

ମରୁଆ : ଆଲୋକ ଯାହା କହିଲେ ମୁଁ ସେଥିରେ ରାଜି । ମୁଁ ତାର ନିୟମ,

ଫିୟମ କିଛି ଜାଣିନାହିଁ । ଆଲୋକ ଆଉ ତାଙ୍କ କ୍ଲବ ମତେ ଏ ବିଷୟରେ ସବୁକଥାରେ ସାହାଯ୍ୟ କରିବେ ।

ଆଲୋକ : ଠିକ୍ ଅଛି । ଆମେ ସାହାଯ୍ୟ କରିବୁ । ଆଉ ଗୋଟିଏ କଥା । ଖାଉଟି ସୁରକ୍ଷା ଆଇନ୍ ବିଷୟରେ କେତେକ ଜାଣିବା କଥାକୁ ନେଇ ସାଧାରଣ ଲୋକମାନେ ବୁଝିପାରିବା ପରି ସରଳ ଭାଷାରେ ଓଡ଼ିଶା ସରକାରଙ୍କ ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ ବିଭାଗ ଦ୍ଵାରା କେତେ ଗୁଡ଼ିଏ ପ୍ରଚାରପତ୍ର ଛପାଯାଇଛି । ସେଗୁଡ଼ିକ ଆମେ ଆଣି ଆମ କ୍ଲବ ତରଫରୁ ବାଣ୍ଟିଛୁ । ଆପଣମାନେ ପଢ଼ିଥିବେ । ଯେଉଁମାନେ ସେ ପ୍ରଚାର ପତ୍ର ପାଇ ନାହାନ୍ତି ସେମାନେ ଆସି ଏଠାରୁ ନେଇ ଯାଆନ୍ତୁ ।

ଅପର୍ଣ୍ଣା : ଆମେ ସେ ସବୁ ପାଇଛୁ ।

ଆଲୋକ : ସେ ଗୁଡ଼ିକ ପଢ଼ିଲେ ଆପଣମାନେ ଖାଉଟି ସୁରକ୍ଷା ଆଇନ ବିଷୟରେ ଭଲ ଭାବରେ ଜାଣି ପାରିବେ । ତଥାପି ଯଦି କାହାର କିଛି ବୁଝିବାର ଥାଏ, ତାହେଲେ ଜଣ, ଜଣ କରି ପଚାରନ୍ତୁ । ଆମେ ଆପଣଙ୍କର ସନ୍ଦେହ ଦୂର କରିଦେବୁ ।

ଅନାଦି : ମୋର ଗୋଟିଏ ପ୍ରଶ୍ନ ଅଛି ।

ଆଲୋକ : ପଚାର ଅନାଦି ଭାଇ, ପଚାର ।

ଅନାଦି : ଆମ ଗାଆଁ ଲୋକଙ୍କର ପାଞ୍ଚଟା ଯାକ ମକଦ୍ଦମା କେବଳ ଜିଲ୍ଲା ଖାଉଟି ଅଦାଲତରେ ଫଇସଲା ହେଲା । ପ୍ରଚାର ପତ୍ରରେ ଲେଖାହେଇଥିବା ରାଜ୍ୟ କମିଶନ ଓ ଜାତୀୟ କମିଶନ ଏମିତି ଆଉ ଦିଇଟା ଅଦାଲତ କାହିଁ କି ଅଛି ? ତାଙ୍କର କାମ କ'ଣ ?

ଆଲୋକ : ଯେଉଁ ଖାଉଟି ମକଦ୍ଦମାରେ କ୍ଷତିର ପରିମାଣ ୫ଲକ୍ଷ ଟଙ୍କା ଭିତରେ ସେ ଗୁଡ଼ିକର ବିଚାର ଜିଲ୍ଲା ଖାଉଟି ଅଦାଲତରେ ହେବ । କ୍ଷତିର ପରିମାଣ ୫ଲକ୍ଷ ଟଙ୍କାରୁ ବେଶୀ ଓ ୨୦ ଲକ୍ଷ ଟଙ୍କାରୁ କମ୍ ହେଲେ ତାହା ରାଜ୍ୟ ଖାଉଟି କମିଶନରେ ବିଚାର କରାଯିବ । କିନ୍ତୁ କ୍ଷତିର ପରିମାଣ ଯେଉଁଠି ୨୦ ଲକ୍ଷ ଟଙ୍କାରୁ ଅଧିକ ହେବ ସେ ମକଦ୍ଦମା

ଗୁଡ଼ିକ ଜାତୀୟ କମିଶନରେ ବିଚାର ହେବ ।

ଅନାଦି : ଏତିକି ନା ଆଉ କିଛି କାମ ଅଛି ?

ଆଲୋକ : ହଁ, ଅଛି । ଜିଲ୍ଲା ଖାଉଟି ଅଦାଲତର ବିଚାରରେ ଯିଏ ସନ୍ତୁଷ୍ଟ ନୁହଁ ୩୦ ଦିନ ଭିତରେ ତାଙ୍କ ଆଦେଶ ବିରୁଦ୍ଧରେ ରାଜ୍ୟ କମିଶନ୍‌ରେ ଅପିଲ କରିପାରିବେ । ରାଜ୍ୟ କମିଶନର ଆଦେଶ ବିରୁଦ୍ଧରେ ସେମିତି ୩୦ ଦିନ ଭିତରେ ଜାତୀୟ କମିଶନରେ ଅପିଲ କରି ହେବ ।

ଫଗୁଆ : ଖାଉଟି କମିଶନଙ୍କ ଆଦେଶକୁ ଯଦି କିଏ ନମାନେ, ତାହେଲେ କ'ଣ କରାଯିବ ?

ଆଲୋକ : ଫଗୁଆ ଭାଇ । ଆପଣ ଗୋଟିଏ ଖୁବ୍ ବଢ଼ିଆ ପ୍ରଶ୍ନ ପଚାରିଲେ । ଖାଉଟି ଅଦାଲତରେ ଆଦେଶ ଯଦି କିଏ ନମାନେ ତାହେଲେ ଅଦାଲତକୁ ସେ ବିଷୟରେ ଦରଖାସ୍ତ କଲେ, ଆଦେଶ ପାଳନ କରିନଥିବା ଲୋକଙ୍କୁ ସର୍ବାଧିକ ୩ ବର୍ଷ ଜେଲ ଓ ୧୦ ହଜାର ଟଙ୍କା ଜୋରିମନା ଦେବାକୁ ଆଦେଶ ହୋଇପାରେ ।

ମରୁଆ : ଦୋକାନୀମାନେ ଆମକୁ କେତେ ନାହିଁ କେତେ ବାଟରେ ଠକୁଚନ୍ତି । ଆମେ ସେ ସବୁ ଜାଣିଲେ ସିନା ତାଙ୍କ ନାଆଁରେ ଖାଉଟି ଅଦାଲତରେ ମକଦ୍ଦମା କରିବୁ ?

ଆଲୋକ : ମରୁଆ ଭାଉଜ ଅସଲ କଥାଟା ପଚାରିଚନ୍ତି । ଆଜିକାଲି ବ୍ୟବସାୟୀମାନେ ବହୁତ ଚାଲାକ ହେଲେଣି । ଖାଉଟିମାନଙ୍କୁ ଠକି ଅସାଧୁ ଉପାୟରେ ଧନ ରୋଜଗାର କରି ରାତାରାତି ବଡ଼ଲୋକ ହେବାକୁ ଇଚ୍ଛା କରୁଚନ୍ତି ।

ଜଗୁଆ : ସେ କଥା ସତ ଯେ, ଆମେ ତାଙ୍କ ଠକାମିକୁ ଧରିବୁ କେମିତି ?

ଆଲୋକ : ଦୁଧରେ କାଗଜମଣ୍ଡ, ଘିଅରେ ଘୁସୁରୀଚର୍ବି, ଅଟାରେ ଚଥକ ଗୁଣ୍ଡ, ବେସନରେ ଖେସାରୀ, ଚା ପତ୍ରରେ ବିରିଚୋପା, ଜିରଠ ଗୁଣ୍ଡ, ଆଳୁଚୋପା, ଚାଉଳରେ ଧଳାଗୋଡ଼ି, ଖାଇବା ତେଲରେ ରଙ୍ଗ ଓ ଖଣିଜ ତେଲ, ପେଟ୍ରୋଲ୍‌ରେ କିରାସିନ ଆଉ କିରାସିନ୍‌ରେ ପାଣି

ମିଶାଉଚନ୍ତି ।

ଫଗୁଆ : ଏ ସବୁ ଆମେ ଜାଣିବା କେମିତି ?

ଆଲୋକ : ଆଖିରେ ସିନା ଏସବୁ ଧରାପଡ଼ିବ ନାହିଁ, ବ୍ୟବହାର କଲେ ଜଣା ପଡ଼ିବ । ଏସବୁ ଭେଜାଲ ଜିନିଷ ପରଖିବା ପାଇଁ ସ୍ୱତନ୍ତ୍ର ପରୀକ୍ଷାଗାର ଅଛି ।

ମରୁଆ : ଖାଲି ଏତିକି ନା ଆଉ କୋଉବାଟରେ ବ୍ୟବସାୟୀମାନେ ଠକନ୍ତି ।

ଆଲୋକ : ଶରତ, ତମେ ଟିକିଏ ଭଲ ଭାବରେ ବୁଝେଇ ଦିଅ ।

ଶରତ : ଆଲୋକ ଆପଣମାନଙ୍କୁ ବ୍ୟବସାୟୀମାନଙ୍କର ଯେଉଁ ଅସାଧୁ ବାଟ ବିଷୟରେ ସୂଚନା ଦେଲା ତା ବାଦ୍ ଆଉ କିଛି ଅସାଧୁ ଉପାୟ ସେମାନେ ଅବଲମ୍ବନ କରନ୍ତି । କେତେକ ବ୍ୟବସାୟୀ ସମୟ ଗଡ଼ିଯାଇଥିବା ଔଷଧ ବିକନ୍ତି । ବିଭିନ୍ନ ଜିନିଷର ପ୍ୟାକେଟ୍, ବୋତଲ, ଓ ଟିଣ ଉପରେ ଲେଖାଯାଇଥିବା ଦାମ୍‌ଠାରୁ ଅଧିକ ଦାମ୍ ନିଅନ୍ତି । ଓଜନ ଓ ମାପରେ ଠକନ୍ତି । ଆମେ ଖାଉଟି ଅଧିକାର ପ୍ରତି ସଚେତନ ହେଲେ ଅସାଧୁ ବ୍ୟବସାୟୀମାନେ ଆମକୁ ଠକି ପାରିବେ ନାହିଁ ।

ଅନାଦି : ଶରତ ! ଆରେ ତୁ ଏଇ ଯୋଉ ଖାଉଟି ଅଧିକାର କଥା କହିଲୁ ସେଇଟା ପୁଣି କ'ଣ ?

ଶରତ : ଖାଉଟି ମାନଙ୍କର ପାଞ୍ଚଟି ଅଧିକାର ଅଛି । ସେ ଗୁଡ଼ିକ ହେଲା, ନିରାପତ୍ତା ଅଧିକାର, ସୂଚୀତ ହେବା ଅଧିକାର, ବାଛିବା ଅଧିକାର, ଆପତ୍ତି କରିବା ଅଧିକାର, ଆଉ ଅଭିଯୋଗ ସମାଧାନ ଅଧିକାର ।

ଫଗୁଆ : ଏ ସବୁ ଅଧିକାର ଗୁଡ଼ାକ କ'ଣ ଟିକେ ଗୋଟି ଗୋଟି କି ବୁଝେଇ ଦେ, ଆମେ ବୁଝିପାରୁ ନଉଁ ।

ଶରତ : ନିରାପତ୍ତା ଅଧିକାର ମାନେ ଆମେ ଗୋଟେ ଜିନିଷ କିଣିଲେ କି ଗୋଟେ ସେବା ପାଇଁ କିଛି ପଇସା ଦେଲେ । ତା ଦ୍ୱାରା ଯେପରି ଆମର କିଛି କ୍ଷତି ନହୁଏ, ସେ ଅଧିକାର ଆମର ଅଛି ।

ଅପର୍ଣ୍ଣି : ଆଉ ସୂଚିତ ହେବା ଅଧିକାରଟା କ'ଣ ?

ଶରତ ମନେକର ଗୋଟିଏ ପ୍ୟାକେଟ୍‌ରେ ବୋତଲରେ କି ଟିଣରେ କିଛି ଜିନିଷ ଅଛି । ତାର ଓଜନ କେତେ, ତାହା କେବେ ପ୍ୟାକେଟ୍ ହୋଇଛି, ତାର ଦାମ୍ କେତେ, ଆଇ.ଏସ୍.ଆଇ କିମ୍ବା ଆଗମାର୍କ ସେଥିରେ ଅଛି କି ନାହିଁ, ଏମିତି ସବୁ ବିଷୟ ତା ଉପରେ ଲେଖାଯିବା କଥା ।

ଫଗୁଆ : ବାଛିବା ଅଧିକାରଟାତ ବୁଝି ହଉଚି । ଆପତ୍ତି କରିବା ଅଧିକାର ଟାବି ବୁଝାପଡୁଛି । କିନ୍ତୁ ଅଭିଯୋଗ ସମାଧାନ କଥାଟା କ'ଣ ?

ଶରତ : ଖାଉଟିର ଯଦି କିଛି କ୍ଷତି ହେଲା ସେ ଖାଉଟି ଅଦାଲତରେ ସେ ବିଷୟରେ ଅଭିଯୋଗ କରିପାରିବ ଓ ଖାଉଟି ଅଦାଲତ ତାର ସମାଧାନ କରିବ ।

ଅନାଦି : ବ୍ୟବସାୟୀମାନେ ଆମକୁ ଏତେ ବାଟରେ ଠକୁଛନ୍ତି ବୋଲି ମୋର ଆଗରୁ ମୋଟେ ଧାରଣା ନଥିଲା ।

ଅପର୍ଣ୍ଣି : ଆମେ ଏଥର ସବୁଜିନିଷ ଠିକ୍‌ଭାବେ ଦେଖି, ବାଛି, ମାପ କି ଓଜନ କରି କିଣିବୁ ।

ମଗୁଆ : ହାଟ, ବଜାର କି ଦୋକାନରୁ କିଣି ଆଣୁଥିବା ଜିନିଷ ଖରାପ ପଡ଼ିଲେ ଆଗେ ଆମେ ଭାଗ୍ୟ ଆବରି ଚୁପ୍ ରହୁଥିଲୁ । ଏବେ ଆଉ ସେମିତି ହବ ନେଇଁ । ଜିନିଷ ଖରାପ ପଡ଼ିଲେ ଆମେ ଦୋକାନୀକୁ ଜିନିଷ ଫେରସ୍ତ ଦେବୁ । ଯଦି ସିଏ ଜିନିଷ ଫେରାଇ ନ ନିଏ ତାହେଲେ ଆମେ ଖାଉଟି ଅଦାଲତରେ ମକଦ୍ଦମା କରିବୁ ।

ଆଲୋକ : ଖାଉଟି ଆନ୍ଦୋଳନ ଆଜି ଆମ ସମସ୍ତଙ୍କର ଆଖି ଖୋଲି ଦେଇଚି । ଆମ ଅଞ୍ଚଳର ସମସ୍ତ ଖାଉଟି ଆଜି ସଚେତନ ।

ଶରତ : ଆମେ ଟଙ୍କା ଦେଇ କିଣୁଥିବା ଜିନିଷ କି ସେବା ଖରାପ ପଡ଼ିଲେ ଖାଉଟି ଅଦାଲତରେ କ୍ଷତିପୂରଣ ଦାବି କରିବୁ ।

ଆଲୋକ : କହନ୍ତୁ ଭାଇମାନେ ମୋ କଣ୍ଠରେ କଣ୍ଠ ମିଳେଇ କୁହନ୍ତୁ ଖାଉଟିମାନଙ୍କ ପ୍ରତି ହେଉଥିବା ଅନ୍ୟାୟ ଆମେ ସହିବୁ ନାହିଁ ।

ଆନନ୍ଦ ଚନ୍ଦ୍ର ପତ୍ରି

ସମସ୍ତେ : ସହିବୁ ନାହିଁ, ସହିବୁ ନାହିଁ ।
ଆଲୋକ : ଖାଉଟି ସୁରକ୍ଷା ଆମର ଲକ୍ଷ୍ୟ ।
ସମସ୍ତେ : ଆମର ଲକ୍ଷ୍ୟ, ଆମର ଲକ୍ଷ୍ୟ ।
ଆଲୋକ : ଖାଉଟି ସୁରକ୍ଷା ଆଇନ - ଜିନ୍ଦାବାଦ
ସମସ୍ତେ : ଜିନ୍ଦାବାଦ, ଜିନ୍ଦାବାଦ ।
ଆଲୋକ : ମାପ, ଓଜନ, ମାନ
ଖାଉଟି ହୁଅ ସଚେତନ ।
ସମସ୍ତେ : ଖାଉଟି ହୁଅ ସାବଧାନ, ସାବଧାନ ।
ଆଲୋକ : ପଇସା ଦେଇ ଜିନିଷ କିଣ
ସମସ୍ତେ : ଭଲ କି ମନ୍ଦ ପରଖି ଆଣ ।
ଆଲୋକ : ସେବା କିଣ କି ଜିନିଷ କିଣ,
ସମସ୍ତେ : ଦେଖି ପରଖି ଘରକୁ ଆଣ ।
ଆଲୋକ : ଖାଉଟି ସ୍ୱାର୍ଥର ସୁରକ୍ଷା ।
ସମସ୍ତେ : ଆମ ଅଧିକାରର ସୁରକ୍ଷା ।
ଆଲୋକ : ଖାଉଟି ସୁରକ୍ଷା ଅଧିକାର ।
ସମସ୍ତେ : ଅସାଧୁ ବ୍ୟବସାୟୀ ହୁଅ ହୁସିଆର ।
ଆଲୋକ : ଖରଚା ନାହିଁ କି ଓକିଲ ନାହିଁ,
ସମସ୍ତେ : ଖାଉଟି ଫୋରମ ଯାଅହେ ଭାଇ ।
ଆଲୋକ : ଅନ୍ୟାୟ ସହନି ଖାଉଟି ଭାଇ
ସମସ୍ତେ : କଂଜ୍ୟୁମର କୋର୍ଟ ତୁମରି ପାଇଁ ।
ଆଲୋକ : ଟିକିଏ ସାବଧାନତା, ବହୁତ ସୁବିଧା
ସମସ୍ତେ : ଖାଉଟି ଭାଇ ମନେ ରଖିଥା ।
ଆଲୋକ : ଦେଖିଚାହିଁ ବାଛିକି କିଣ,
ସମସ୍ତେ : ଠିକ୍ ଠିକ୍ ମାପିକି ଆଣ ।
ଆଲୋକ : ବାଛିକି କିଣ
ସମସ୍ତେ : ମାପିକି ଆଣ ।

ଆନଂଦ ଚଂଦ୍ର ପହି

ଆଲୋକ : ମାନ, ଗୁଣ, ଓଜନ, ଦର

ସମସ୍ତେ : କିଣ ଏ ସବୁକୁ ଦେଇ ନଜର ।

ଆଲୋକ : ଖାଉଟି ସୁରକ୍ଷା

ସମସ୍ତେ : ଖାଉଟିର କର୍ତ୍ତବ୍ୟ

ଆଲୋକ : ଖାଉଟି ଆନ୍ଦୋଳନ ଜିନ୍ଦାବାଦ

ସମସ୍ତେ : ଜିନ୍ଦାବାଦ, ଜିନ୍ଦାବାଦ ।

□□

ଆନନ୍ଦ ଚନ୍ଦ୍ର ପହି